# କୀଚକ ବଧ ସମୀକ୍ଷା

(କବିଜୀବନୀ ଓ ସମାଲୋଚନା ସମ୍ବଳିତ
ମୂଳ କାବ୍ୟର ଗଦ୍ୟଭାଷ୍ୟ)

ଲେଖକ

ପ୍ରବୀଣ ଅଧ୍ୟାପକ ଦ୍ଵୟ

ପ୍ରକାଶକ

ଏଡୁକେସନାଲ ଷ୍ଟୋର୍ସ

ବାଲୁବଜାର, କଟକ—୨

Digitized by srujanika@gmail.com

# କୀଚକ ବଧ

## ପ୍ରଥମ ଅଧ୍ୟାୟ

ପୃଥିବୀ ମଧ୍ୟରେ ବିରାଟ ନଗର ସୌନ୍ଦର୍ଯ୍ୟରେ ଅତୁଳନୀୟ । ସ୍ୱୟଂ ଲକ୍ଷ୍ମୀ ଦେବୀଙ୍କର କେଳିମନ୍ଦିର ପରି ଏହା ପ୍ରତୀୟମାନ ହୁଏ । ଏହାର ବିପଣୀଗୁଡ଼ିକ ଶୁଭ୍ର ସୌଧମାଳାରେ ଶୋଭିତ । ଏହି ସୌଧଗୁଡ଼ିକ ରଜତନିର୍ମିତ ପର୍ବତପରି ଶୋଭା ପାଉଥାନ୍ତି । ସୌଧର ଅଗ୍ର ଭାଗରେ ସ୍ୱର୍ଣ୍ଣକୁମ୍ଭ ବିରାଜିତ । ପ୍ରତ୍ୟେକ ସୌଧ ହସ୍ତ-ଅଲେପିତ ଶିବଙ୍କର ପ୍ରତିମୂର୍ତ୍ତି ପରି ଦେଖାଯାଉଥାଏ । ବିପଣୀର ଦୋକାନଗୁଡ଼ିକ ସୁସଜ୍ଜିତ ହୋଇ ସୁବେଶା ବାରାଙ୍ଗନା-ମାନଙ୍କ ସଦୃଶ ଲୋକମାନଙ୍କର ମନ ଓ ଧନକୁ ଆକର୍ଷଣ କରୁଥାନ୍ତି । ରାଜପଥ ସ୍ୱର୍ଗଗଙ୍ଗା ସଦୃଶ ତୁଳନୀୟ । ସ୍ୱର୍ଗଗଙ୍ଗାରେ ସ୍ୱର୍ଣ୍ଣପଦ୍ମ ବିକଶିତ ହେଲାପରି ରାଜପଥ ଉପରେ ଶିଶୁମାନେ ବିହାର କରୁଥାନ୍ତି । ରମଣୀମାନଙ୍କର କବରୀ ପୁଷ୍ପମାଳାରେ ଶୋଭା ପାଉଥାଏ । ରାଜପୁରର ଏହି ରମଣୀମାନେ ସ୍ୱର୍ଗପୁରର ସୃଷ୍ଟି ପାରିଜାତ ଲତାତୁଲ୍ୟ ମନୋହାରିଣୀ । ଚନ୍ଦ୍ରମୁଖୀ କୋମଳାଙ୍ଗୀ ରମଣୀମାନଙ୍କୁ ଧାରଣକରି [illegible] ଦେବୀଙ୍କ ସଦୃଶ ଶୋଭା ପାଉଥାଏ । [illegible] ବିଦ୍ୟାଧର ଉଚ୍ଚତମ ଓ [illegible] ବର୍ଣ୍ଣ [illegible] ପରି ଶୁଭ୍ର । [illegible] ତୋରଣ ଇନ୍ଦ୍ରଧନୁର କାନ୍ତି ଧାରଣ କରୁଥିଲା । ସେହି ସୁବର୍ଣ୍ଣନିର୍ମିତ ଓ [illegible] ସୂର୍ଯ୍ୟକିରଣ ଉଦିତ ହେଲେ ତାହା ଝକ୍ ଝକ୍ ଦିଶୁଥିଲା । ଅନ୍ତଃପୁରର

Digitized by srujanika@gmail.com

ଭିତ୍ତିଗୁଡ଼ିକ ମନୋହର ଶିଳ୍ପାବଳୀରେ ଭୂଷିତ ହୋଇଥିଲା ଏବଂ ଏହାର ଜ୍ୟୋତିରେ ଅନ୍ଧକାର ବିଦୂରିତ ହେଉଥିଲା । ଭିତ୍ତି ଉପରେ ସ୍ୱର୍ଣ୍ଣବୃକ୍ଷର ପତ୍ର, ମାଣିକ୍ୟର ପୁଷ୍ପ ଓ ଇନ୍ଦ୍ରନୀଳର ଭ୍ରମର ଖଚିତ ହୋଇଥିଲା । କୌଣସି କୌଣସିଠାରେ ସ୍ୱର୍ଣ୍ଣନିର୍ମିତ ଲତାରେ ବହୁବିଧ ରତ୍ନନିର୍ମିତ ପୁଷ୍ପ ଓ ହୀରକର କଳିକା ଶୋଭା ପାଉଥିଲା । ସ୍ୱର୍ଣ୍ଣ, ରୌପ୍ୟ ଓ ବିବିଧ ରତ୍ନରେ ନିର୍ମିତ ମୟୂର, ଖଞ୍ଜନ, ଶୁକ, ପାରା ପ୍ରଭୃତି ପକ୍ଷୀ ସେଥିରେ ସ୍ଥାପିତ ହୋଇଥିଲେ । ସେମାନଙ୍କର ଚକ୍ଷୁ ମାଣିକ୍ୟରେ ନିର୍ମିତ ହୋଇଥିଲା । ରାଜପ୍ରାସାଦର କୃତ୍ରିମ ପୁଷ୍କରିଣୀରେ ସ୍ଫଟିକ ଜଳର ସ୍ଥାନ ଅଧିକାର କରିଥିଲା । ପୁଷ୍କରିଣୀକୁ ପ୍ରବେଶ କରିବା ପାଇଁ ଏକ ସ୍ୱର୍ଣ୍ଣସେତୁ ଥିଲା । ଏହି ପୁଷ୍କରିଣୀରେ ରଜତ-ନିର୍ମିତ କୁମୁଦ ଓ ଇନ୍ଦ୍ରନୀଳମଣି-ନିର୍ମିତ ନୀଳପଦ୍ମ, ସୁବର୍ଣ୍ଣ ନିର୍ମିତ ବୀଜକୋଷ, ପଦ୍ମରାଗ-ନିର୍ମିତ ପଦ୍ମ, ମରକତ-ନିର୍ମିତ ପଦ୍ମନାଳ ଓ ପଦ୍ମପତ୍ର ଶୋଭା ପାଉଥିଲା । ସ୍ଥାନେ ସ୍ଥାନେ ରୌପ୍ୟ ନିର୍ମିତ ରାଜହଂସ ସ୍ଥାପିତ ହୋଇଥିଲା । ସେମାନଙ୍କର ପାଦ ଓ ଚଞ୍ଚୁ ସ୍ୱର୍ଣ୍ଣରେ ନିର୍ମିତ । କୌଣସି କୌଣସି ସ୍ଥାନରେ ରୌପ୍ୟ ନିର୍ମିତ ବକ ରୌପ୍ୟନିର୍ମିତ ମତ୍ସ୍ୟକୁ ମୁଖରେ ଧାରଣ କରି ଦଣ୍ଡାୟମାନ ରହିଥିଲା । ନବରତ୍ନରେ ଦୀପାବଳୀ ଜଳି ଉଠିଲେ ଏହି ପୁଷ୍କରିଣୀର ଦୀପ୍ତି ବହୁଗୁଣରେ ବୃଦ୍ଧି ପାଏ । ପ୍ରାସାଦର ଛତିଶି ମର୍ମର ପ୍ରସ୍ତର ନିର୍ମିତ ସ୍ତମ୍ଭ ଉପରେ ଅବସ୍ଥିତ । ରାଣୀମାନଙ୍କର ସ୍ନେହରେ ପାଳିତ ମୃଗଶିଶୁଗଣ ଅନ୍ତଃପୁରର ପ୍ରାଙ୍ଗଣରେ ବିଚରଣ କରି କ୍ରୀଡ଼ା କରୁଥିଲେ । ରାଜାଙ୍କର ହସ୍ତି-ଶାଳାରେ ବହୁସଂଖ୍ୟକ ହସ୍ତୀ ଥିଲେ । ସେମାନେ ଏଠାରେ ଏପରି ସୁଖକର ଜୀବନ ଯାପନ କରୁଥିଲେ ଯେ ଝରଣା-ଜଳସିକ୍ତ କନ୍ଦରରେ ଭ୍ରମଣ, ଗଭୀର ହ୍ରଦଜଳରେ ସନ୍ତରଣ, ହସ୍ତିନୀ ସଙ୍ଗତ

Digitized by srujanika@gmail.com

ସ୍ୱଚ୍ଛନ୍ଦ ବନବିହାର, ବନବୃକ୍ଷର କୋମଳ ପତ୍ରଭକ୍ଷଣ, ଏ ସବୁ ଭୁଲିଯାଇ ଥିଲେ । ସେମାନଙ୍କର ଦୀର୍ଘ, ସ୍ଥୂଳ ଦନ୍ତ ଥିଲା । ରଜାଙ୍କର ଅଶ୍ୱଶାଳାରେ ଥିବା ଅଶ୍ୱଗୁଡ଼ିକ ଖୁବ ବେଗଶାଳୀ ଥିଲେ ଓ ଶତ୍ରୁବ୍ୟୂହ ଭେଦ କରିବାରେ ବିଚକ୍ଷଣ ଥିଲେ । ସେମାନଙ୍କର ହ୍ରେଷାରବ ଶୁଣିଲେ ଶତ୍ରୁର ହୃଦୟ କମ୍ପି ଉଠୁଥିଲା । ନୀଳ, ରଙ୍ଗ, ଶୁକ୍ଳ ପ୍ରଭୃତି ବିବିଧ ରଙ୍ଗର ଲକ୍ଷ ଲକ୍ଷ ଦୁଗ୍ଧବତୀ ଗାଈ ଗୋଷ୍ଠଗୁଡ଼ିକରେ ରହିଥିଲେ । ସେହିପରି ବହୁ ସଂଖ୍ୟକ ବଳଶାଳୀ ଷଣ୍ଢ ମଧ୍ୟ ଥିଲେ । ଗୋବତ୍ସଗୁଡ଼ିକ ପ୍ରଚୁର ଦୁଗ୍ଧ ପାନ କରି ଆନନ୍ଦରେ କ୍ରୀଡ଼ା କରୁଥିଲେ ।

ନଗରର ଚତୁଃପାର୍ଶ୍ୱ ଆମ୍ରକୁଞ୍ଜଦ୍ୱାରା ବେଷ୍ଟିତ ଥିଲା । ସେଗୁଡ଼ିକରେ ଗାଢ଼ ଶ୍ୟାମଳବର୍ଣ୍ଣର ପତ୍ର ଶୋଭା ପାଉଥିଲା । ସେଗୁଡ଼ିକର ଶାଖା ପରସ୍ପର ଛନ୍ଦାଛନ୍ଦି ହୋଇଥିଲେ । ବୃକ୍ଷଶାଖା-ପତ୍ରର ଅନ୍ତରାଳରେ ସୂର୍ଯ୍ୟକିରଣ ପଡ଼ିବାରୁ ଭୂମି ଶୋଭିତ ଦିଶୁଥିଲା । ଛାୟା ମଧ୍ୟରେ ସୂର୍ଯ୍ୟର ଆଲୋକ ଅନନ୍ତଙ୍କ ମସ୍ତକର ଉଜ୍ଜ୍ୱଳମଣି, ଯମୁନାଜଳରେ ଶ୍ୱେତପଦ୍ମ, ବର୍ଷାର ଅନ୍ଧକାରରେ ବିକଶିତ ମଲ୍ଲୀଫୁଲ, ପାପୀଜୀବନରେ ପୂର୍ବକୃତ ପୁଣ୍ୟ ସଦୃଶ ଭୁଲମାସୁ । ସତେ ଯେପରି ବୃକ୍ଷଗୁଡ଼ିକ ଊର୍ଦ୍ଧ୍ୱବାହୁ ଯୋଗୀରୂପେ ଦଣ୍ଡାୟମାନ ଓ ତଳେ ମୃଗଚର୍ମ ଆସନରେ ଶୁଭ୍ରବିନ୍ଦୁଗୁଡ଼ିକ ଦେଖାଯାଉଅଛି । ଘନଶ୍ୟାମ ଆମ୍ରବନ ମଧ୍ୟରେ ଅବସ୍ଥିତ ଏହି ଶୁଭ୍ର ବିରାଟନଗରକୁ ଦେଖି ସ୍ୱର୍ଗର ଦେବୀମାନେ ମନେ କରୁଥିଲେ—ସତେ କଅଣ ଏ ପୃଥିବୀଦେବୀର ଖୋଷାରେ ଯୂଥିଫୁଲର ଗଭା ! ଅଥବା କାଳିନ୍ଦୀରେ ଗୋଟିଏ ହଂସଦଳ !

ବନ ମଧ୍ୟରେ ବିବିଧ ଜାତିର ପକ୍ଷୀ ଦଳ ଦଳ ହୋଇ ମଧୁର ସ୍ୱନରେ ବସୁଥିଲେ । ସେମାନଙ୍କ ଶୋଭିତ ବିବିଧ ବର୍ଣ୍ଣ ଦୃଷ୍ଟିକୁ

Digitized by srujanika@gmail.com

ଦାରଣ କରୁଥିଲା । କେତେବେଳେ କେଉଁ ପକ୍ଷୀ ବୃକ୍ଷରୁ ଉଲକା-ବେଗରେ ତଳକୁ ଉଡ଼ିଆସି ପୁଣି ବୃକ୍ଷଉପରକୁ ଚାଲିଯାଉଥିଲା । କେଉଁ ପକ୍ଷୀ ଭୂମି ଉପରେ ଖସି ପଡ଼ିଲାବେଳେ ମନେ ହେଉଥିଲା, ସତେ ଅବା ଆକାଶଲକ୍ଷ୍ମୀ କେଉଁ ପକ୍ଷବଧୂର ବକ୍ଷରୁ ମୁକ୍ତା ଖସି ପଡ଼ିଲାକି ? କେଉଁ ପକ୍ଷୀ କିଛିକାଳ ପକ୍ଷ ହଲାଇ ଗତିକଲା ପରେ ପକ୍ଷ ସ୍ଥିର କରି ବାୟୁବକ୍ଷରେ ସନ୍ତରଣ କରି ଯାଉଥିଲା ଏବଂ ମଧ୍ୟରେ ମଧ୍ୟରେ ତାର ସ୍ୱରଲହରୀ ତାଳ ଦେଉଥିଲା । କେଉଁ ପକ୍ଷୀର ଗତି କେତେବେଳେ ଊର୍ଦ୍ଧ୍ୱରେ ଓ କେତେବେଳେ ନିମ୍ନରେ ହେଉଥାଏ ।

ନଗରର ବାଳକବାଳିକାଗଣ ବୃକ୍ଷଶାଖାରେ ଦୋଳି ଖେଳି ମଧୁର ସ୍ୱରରେ ଗୀତ ଗାଉଥିଲେ । ସେମାନଙ୍କ ଗୀତର କ୍ଷୀଣ ପ୍ରତିଧ୍ୱନି ବନଦେବୀଙ୍କର ଗୀତସ୍ୱରପରି ତାହା ସଙ୍ଗରେ ମିଶି ଯାଉଥିଲା । କୃଷ୍ଣସାରମାନେ ବୃକ୍ଷଛାୟାରେ ଶୋଇ ରୋମନ୍ଥନ କରିବାରେ ରତ ଥିଲେ ।

ଏହି ସହକାରବନ ମଧ୍ୟରେ ନିର୍ମଳ ଜଳପୂର୍ଣ୍ଣ ଏକ ପୁଷ୍କରିଣୀ ଥିଲା । ଏହା ବନଲକ୍ଷ୍ମୀଙ୍କ ହୃଦୟରେ ପଦକପରି ଶୋଭା ପାଉଥିଲା । ଏଥିରେ ଦିବା ଭାଗରେ ପଦ୍ମ ଓ ରାତ୍ରିରେ କୁମୁଦ ପ୍ରସ୍ଫୁଟିତ ହେଉଥିଲା । ରାତ୍ରିରେ ଗଗନର ତାରାମାନେ ଏଥିରେ ପ୍ରତିବିମ୍ବିତ ହେଲେ ବୋଧ ହେଉଥିଲା ଯେପରିକି ସେ ପୁଷ୍କରିଣୀ ସ୍ୱର୍ଣ୍ଣପଦ୍ମର ହାର ପରିଧାନ କରିଅଛି । ପ୍ରଭାତକାଳରେ ପୁଷ୍କରିଣୀର ତଟଦେଶ ନାନାପୁଷ୍ପରେ ସୁମଣ୍ଡିତ ହୋଇଥାଏ । ନଗରର କ୍ରୀଡ଼ାଚପଳ ଯୁବକମାନେ ଆସି ଏଥିରେ ବିହାର କରୁଥିଲେ । ହସ୍ତୀମାନେ ଆନନ୍ଦରେ ଗର୍ଜନ କରି ଏହି ପୁଷ୍କରିଣୀରେ ସ୍ନାନ କରୁଥିଲେ । ସେମାନଙ୍କ ଗର୍ଜନରେ ବନଦେଶ ପ୍ରତିଧ୍ୱନିତ ହେଉଥିଲା । ଦିନର

Digitized by srujanika@gmail.com

ମଧୁଭକ୍ଷଣରେ ମତ୍ତ ହୋଇ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ତାହା ରତିଦେବୀଙ୍କ ବୀଣାର ମଧୁର ଝଙ୍କାରପରି ବୋଧ ହେଉଥିଲା । ଜଳଚର ପକ୍ଷୀମାନଙ୍କର କଳନାଦରେ ଏହା ପୂର୍ଣ୍ଣ ଥିଲା । ଏହି କଳନାଦ ନବବଧୂର କୋମଳ ମଧୁର ବଚନଠାରୁ ଆହୁରି ମଧୁର ଥିଲା । ଏହିପରି ପୁଷ୍କରଣୀଟି ସର୍ବଦା ସଙ୍ଗୀତରେ ଶବ୍ଦାୟମାନ ହେଉଥିଲା ଓ ତାହା କର୍ଣ୍ଣରେ ଅମୃତ ବୃଷ୍ଟି କରୁଥିଲା । ତଟ୍ଟରସ୍ଥ ଜଳବନ୍ଦୁ ଛଳରେ ପୁଷ୍କରଣୀ ତାର ଆସ୍ତୃତ ଦେହରୁ ପ୍ରେମାଶ୍ରୁ ମୋଚନ କରୁଥିଲା । ରାଜାଙ୍କର ହସ୍ତୀର ମସ୍ତକରେ ସିନ୍ଦୂର ଥାଏ ଏବଂ ତାର ଦନ୍ତ ଦ୍ୱିତୀୟାତିଥିର ଚନ୍ଦ୍ରପରି ବର୍ତ୍ତୁଳ ଓ ଶୁଭ୍ର । ତାହାକୁ ଦେଖି ଚକ୍ରବାକ ସନ୍ଧ୍ୟାର ଆଗମନ ଭ୍ରମରେ ଦୁଃଖିତ ମନରେ ପ୍ରିୟାଠାରୁ ବିଦାୟ ନେବାକୁ ବସେ; କିନ୍ତୁ ଆକାଶରେ ସୂର୍ଯ୍ୟଙ୍କୁ ଦେଖିଲେ ତାର ଭ୍ରମ ଦୂର ହୁଏ ଓ ସେ ଦ୍ୱିଗୁଣ ପ୍ରେମରେ ପ୍ରିୟା ସହିତ ବିହାର କରେ ।

ନଗରର ନରନାରୀଗଣ ଏହି ସମସ୍ତ ଶୋଭା ଓ ସୁଖ ମଧ୍ୟରେ ଜୀବନ ଉପଭୋଗ କରୁଥିଲେ । ବିରାଟରାଜ ଏହିପରି ଐଶ୍ୱର୍ଯ୍ୟ ମଧ୍ୟରେ ରହି ରାଜକାର୍ଯ୍ୟ ସମ୍ପାଦନ କରୁଥିଲେ । ଲକ୍ଷ ଲକ୍ଷ ସାମନ୍ତ ରାଜା ତାଙ୍କର ପାଦତଳେ ପ୍ରଣତି ଜଣାଉଥିଲେ ।

ଏହି ସମୟରେ ପଞ୍ଚପାଣ୍ଡବ ଅଜ୍ଞାତ ବାସ କରୁଥିଲେ । ସତ୍ୟ-ବୀର ଯୁଧିଷ୍ଠିର କଙ୍କ ନାମ ଧାରଣ କରି ବ୍ରାହ୍ମଣ ବେଶରେ ବିରାଟ ରାଜାଙ୍କର ଜଣେ ସଭାସଦ ରୂପେ ରହିଥିଲେ । ଯେଉଁ ବୀର ଭୀମ ଯୁଦ୍ଧ ଭୂମିରେ ଶତ ଶତ ବୀରଙ୍କୁ ବଧ କରିଥିଲେ, ଯାହାଙ୍କର ଗଦାକୁ ଦେଖି ପୃଥିବୀ କମ୍ପି ଯାଉଥିଲା, ସେହି ଭୀମ ବିରାଟ ରାଜାଙ୍କର ସୂପକାର ରୂପେ ରନ୍ଧନ କାର୍ଯ୍ୟରେ ନିଯୁକ୍ତ ଥିଲେ । ଯେଉଁ ବୀର ଅର୍ଜ୍ଜୁନଙ୍କର ପରାକ୍ରମରେ ସନ୍ତୁଷ୍ଟ ହୋଇ ମହାଦେବ ତାଙ୍କୁ

Digitized by srujanika@gmail.com

ପାଶୁପତ ମହାସ୍ତ୍ର ପ୍ରଦାନ କରିଥିଲେ, ସ୍ୱୟଂ ଶ୍ରୀକୃଷ୍ଣ ଯାହାଙ୍କର ସଖା ଥିଲେ, ଯାହାଙ୍କୁ କି ନର କି ଦେବତା ସମସ୍ତେ ପ୍ରଶଂସା କରୁଥିଲେ ସେହି ଧନୁର୍ଦ୍ଧର ଅର୍ଜ୍ଜୁନ ବିରାଟ ରାଜନବରରେ କଞ୍ଚୁକୀ ରୂପେ ଅବସ୍ଥାନ କରୁଥିଲେ । ମାଦ୍ରୀଙ୍କର ପୁତ୍ରଦ୍ୱୟ ନକୁଳ ଓ ସହଦେବ । ସେ ଦୁହେଁ ରୂପରେ ଅଶ୍ୱିନୀକୁମାର ତୁଲ୍ୟ ଥିଲେ । ସେମାନେ ରାଜାଙ୍କର ଅଶ୍ୱ ଓ ଗାଈର ରକ୍ଷଣାବେକ୍ଷଣରେ ନିଯୁକ୍ତ ରହି ଉଦରପୋଷଣ କରୁଥିଲେ । ପାଣ୍ଡବମାନଙ୍କର ହୃଦୟଲକ୍ଷ୍ମୀ-ସ୍ୱରୂପିଣୀ ଦ୍ରୌପଦୀ ଶିଳ୍ପକର୍ମ ଦ୍ୱାରା ଜୀବିକାଅର୍ଜନ ପୂର୍ବକ ସୈରନ୍ଧ୍ରୀ ରୂପେ ସେହି ବିରାଟ ରାଜଅନ୍ତଃପୁରରେ ବାସ କରୁଥିଲେ ।

—୦*୦—

# ଦ୍ୱିତୀୟ ଅଧ୍ୟାୟ

ପୃଥିବୀରେ ବସନ୍ତ ଋତୁ ଉପସ୍ଥିତ ହେଲା । ସତେ ଅବା କୋକିଳ କୁହୁ ରବ ଛଳରେ ବସନ୍ତର ବିଜୟବାର୍ତ୍ତା ପାଠ କରିବାକୁ ଲାଗିଲା । ବୃକ୍ଷମାନଙ୍କର ପତିତ ପତ୍ରାବଳୀ ସେହି ବିଜୟ-ସମ୍ବାଦ-ସୂଚକ ପତ୍ରପରି ହେଲା । ସହଜେ ବସନ୍ତ ଋତୁ । ସମ୍ରାଟ୍-ରାଜରାଜ ସୂର୍ଯ୍ୟ ଋତୁ-ସମ୍ରାଟଙ୍କର ଆଗମନ ବାର୍ତ୍ତାରେ ଖୁସି ହୋଇ ପଡ଼ିଲେ । ସେ ଦକ୍ଷିଣ ଦିଗକୁ ଯାଉଥିଲେ । ମାତ୍ର ଏହି ସମ୍ବାଦରେ ସେ ଦକ୍ଷିଣ ଦିଗ୍‌ବଧୂ ଲାଭର ଆଶା ତ୍ୟାଗ କରି ପୁଣି ଉତ୍ତରାଭିମୁଖୀ ହେଲେ । ତାଙ୍କର ଏପରି ଭୟର ଯଥେଷ୍ଟ କାରଣ ଥିଲା । ଶିଶିର ଋତୁ ଆସି ତାଙ୍କର ପ୍ରେୟସୀ ପଦ୍ମିନୀଙ୍କୁ ବିନାଶ କରିଥାଏ । ବର୍ଷାଋତୁ ତାଙ୍କୁ ଗ୍ରାସ କରିଥାଏ । ତେଣୁ ଋତୁ ସମ୍ରାଟ ତାଙ୍କର ଘୋର ଅନିଷ୍ଟ କରିପାରନ୍ତି, ଏହା ସ୍ୱତଃସିଦ୍ଧ ।

Digitized by srujanika@gmail.com

ବସନ୍ତର ଆଗମନରେ ଗ୍ରହମାନେ ପ୍ରସନ୍ନ ଦେଖାଗଲେ । ସେମାନଙ୍କର ମନୋହର ଦୀପ୍ତି ପ୍ରକାଶ ପାଇଲା । ସୂର୍ଯ୍ୟ ହେଉଛନ୍ତି ଦିବସର ପ୍ରଭୁ । ଏଥି ପୂର୍ବରୁ ଶୀତକାଳରେ ସୂର୍ଯ୍ୟଙ୍କର ନିମ୍ନଗତି ହେଉଥିବାରୁ ଦିବସ କ୍ଷୀଣ ହେଉଥିଲା, କିନ୍ତୁ ଏବେ ତାଙ୍କର ଊର୍ଦ୍ଧ୍ୱଗତି ଦେଖି ସେ ଆନନ୍ଦରେ ସ୍ଫୀତ ହେବାକୁ ଲାଗିଲା । ଦିବସର ବୃଦ୍ଧି ସଙ୍ଗେ ଚକ୍ରବାକ ପ୍ରିୟା ସହିତ ଅଧିକ କାଳ ମିଳନର ଆଶାରେ ଆନନ୍ଦିତ ହୋଇ ଉଠିଲା । ପଦ୍ମିନୀ ନିଜର ପତି ସୂର୍ଯ୍ୟଙ୍କର ସମସ୍ତାଳିତ ଦକ୍ଷିଣ ଦିଗକୁ ଗମନ କରିବାର ଦେଖି ଶିଶିରରୂପକ ଗଙ୍ଗାଜଳରେ ଝାସ ଦେଇ ତପସ୍ୟା କରୁଥିଲା । ସେହି ତପଃଫଳରେ ସେ ଏବେ ନବଜୀବନ ଲାଭ କରି ଧ୍ରୁବ ସମ୍ମୁଖୀନ ପତିଙ୍କର ପ୍ରୀତି ଉପଭୋଗ କରିବାକୁ ଲାଗିଲା ।

ଏଣେ ବସନ୍ତ ଅତିଥିଙ୍କର ଉପଯୁକ୍ତ ସତ୍କାର ନିମନ୍ତେ ପୃଥିବୀ-ରାଣୀ ତରଭୁଜ, ପଣସ, ଆମ୍ର ପ୍ରଭୃତି ଫଳ ଓ ବିବିଧ ପୁଷ୍ପର ହାର ସଜାଡ଼ି ରଖିଲେ । ବସନ୍ତର ପ୍ରମୋଦ ନିମନ୍ତେ ବନପ୍ରଦେଶ ସୁସଜ୍ଜିତ ହୋଇ ରହିଲା । ମହୁଲ ଫୁଲ ମୁକ୍ତାପରି ଓ ଗୁରୁ କୋଳି ନୀଳମଣି ପରି ଶୋଭା ପାଇଲା । ଧୀର ପବନ ସମୁଦ୍ର ଦୋଳାର କ୍ରୀଡ଼ା ତ୍ୟାଗ କରି ବସନ୍ତର ସହଚର ହେଲେ । ସେ ଦୁହେଁ ଆସି ପୁଷ୍ପଗନ୍ଧପୂର୍ଣ୍ଣ କୁଞ୍ଜ ମଧ୍ୟରେ ବିହାର କରିବାକୁ ଲାଗିଲେ । ନିଆଳୀ ପ୍ରସ୍ଫୁଟିତ ପୁଷ୍ପରାଶିକୁ ଅର୍ଘ୍ୟରୂପେ ପ୍ରଦାନ କଲା, ଚନ୍ଦ୍ରିକା ସୁନ୍ଦରୀ ଚନ୍ଦ୍ରକାର ମୁଖରେ ବସନ୍ତକୁ ସ୍ୱାଗତ ଜଣାଇଲା । ସୁନ୍ଦରୀ ସୁକାନ୍ତିଦେବୀ ସୁନ୍ଦର ବେଶଭୂଷା ପରିଧାନ କରି ସେଠାରେ ଉପସ୍ଥିତ ହେଲେ । ପୁଷ୍ପଧନ୍ୱା କାମଦେବ ପୁଷ୍ପଶର ଧରି ସେମାନଙ୍କ ସଙ୍ଗେ ମିଳିତ ହେଲେ । ବସନ୍ତ, ଧୀର ପବନ, ସୁକାନ୍ତି, ଧରଣୀ ଓ କାମଦେବ ଏ ପାଞ୍ଚଜଣ ମିଳି ଆନନ୍ଦରେ ତାଣ୍ଡବ ନୃତ୍ୟ କରିବାକୁ ଲାଗିଲେ ।

Digitized by srujanika@gmail.com

ସତେ ଅବା ପୃଥିବୀରେ ଖାଣ୍ଡବବନର ଆବର୍ତ୍ତ ଘଟିଲା । କଏ କେଉଁ ପାପର ଫଳ ଭୋଗକଲା ଜଣ ଆନନ୍ଦରେ ଅଭିଭୂତ ହେଲା, ଆଉ କଏ ଅବା ତାହା ପାଇ ନ ପାରି ଦୁଃଖ ଅନୁଭବ କଲା । ମଧ୍ୟାହ୍ନ ପ୍ରଖର ଉତ୍ତାପରେ ଅସହ୍ୟ ହେଲା ଓ ସନ୍ଧ୍ୟା ଲୋକମାନଙ୍କର ଆଦରଣୀୟ ହେଲା ।

ବୃକ୍ଷମାନଙ୍କରେ ନବୀନପଲ୍ଲବ ଜାତ ହେଲା ଓ ନଦୀର ଗର୍ଭ ଶୁଷ୍କ ହୋଇ ଆସିଲା । କିଂଶୁକ ପୁଷ୍ପ ବିକଶିତ ହେବାରୁ ବନ ଦେଶର କାନ୍ତି ବୃଦ୍ଧି ପାଇଲା । ରାତ୍ରି କ୍ଷୟ ହେବାକୁ ଲାଗିଲା । ପରସ୍ପର ମିଳନରେ ଆବଦ୍ଧ ନାୟକ-ନାୟିକା ପ୍ରେମ ସାଗରାନ୍ତରେ ଜୀବନସ୍ରୋତକୁ ଭସାଇ ଦେଲେ । ବସନ୍ତର ଆଗମନରେ ଯୋଗୀମାନଙ୍କ ମଧ୍ୟ ଧ୍ୟାନମାନଙ୍କରେ ବିଚଳିତ ହୋଇ ପଡ଼ିଲେ ।

ଏହି ବସନ୍ତ ଋତୁର ଶେଷରେ ଚୈତ୍ର ମଙ୍ଗଳବାର ଦିନ ବର୍ଦ୍ଧମାନ ନଗରର ରମଣୀମାନେ ବନଦୁର୍ଗାଙ୍କ ପୂଜା ନିମନ୍ତେ ବାହାରିଲେ । ଆମ୍ର କୁଞ୍ଜ-ପରିବେଷ୍ଟିତ ଏକ ପୁଷ୍କରିଣୀ କୂଳରେ ବନ ଦୁର୍ଗାଙ୍କର ମନ୍ଦିର ଅବସ୍ଥିତ । ତାହାର ଶିରୋଦେଶରେ ଏକ ସୁବର୍ଣ୍ଣ କଳସ ସ୍ଥାପିତ । ବନଦୁର୍ଗା ଏହି ମନ୍ଦିରରେ ପ୍ରତିଷ୍ଠିତ । ସତେ ଅବା ତାଙ୍କର କୃପାଦୃଷ୍ଟି ଲାଭ କରି ସେହି ବନ ଓ ସେହି ପୁଷ୍କରିଣୀ ପବିତ୍ର ହୋଇଥିଲା । ଏବେ ଲୋକମାନଙ୍କର ବାଦ୍ୟ ଧ୍ୱନିରେ ଏହି ବନ କମ୍ପି ଉଠିଲା । ପୁଷ୍କରିଣୀର ପଦ୍ମ ବନରେ ବସିଥିବା ଭ୍ରମରମାନେ ଚଞ୍ଚଳ ହୋଇ ଉଠିଲେ । ବନଦେଶ ଜନ ସମାଗମରେ ପୂର୍ଣ୍ଣ ହୋଇଗଲା । ସେମାନଙ୍କର କୋଳାହଳ ସମୁଦ୍ର ଗର୍ଜନକୁ ବଳି ପଡ଼ିଲା ।

ଏଣେ ପୁରନାରୀମାନେ ବସ୍ତ୍ରାଳଙ୍କାରରେ ସୁସଜ୍ଜିତା ହୋଇ ଦେବୀପୂଜା ଉଦ୍ଦେଶ୍ୟରେ ବାହାରିଲେ । କେଉଁ ରମଣୀ ସୁନ୍ଦର

Digitized by srujanika@gmail.com

ରକ୍ତବର୍ଣ୍ଣର ପାଟବସ୍ତ୍ର ପରିଧାନ କରିଥିଲା । ଗୋଧୂଳି ମସ୍ତକରେ ତାରକାପରି ସେ ସୁନ୍ଦର ଦିଶୁଥିଲା । କିଏ ନିଜକୁ ସବୁଜ ବସ୍ତ୍ରରେ ଆବୃତକରି ଦୂର୍ବାଦଳପରି ଶୋଭିତ ଧରିତ୍ରୀବକ୍ଷରେ ଗଙ୍ଗାର ଶୋଭା ପ୍ରକାଶ କରୁଥିଲା । କାହାର ନୀଳବର୍ଣ୍ଣର ପଟ୍ଟବସ୍ତ୍ର ଉପରେ ସ୍ୱର୍ଣ୍ଣପୁଷ୍ପ ଖଚିତ ହୋଇଥିଲା । ତାହା ଅମାବାସ୍ୟା ବିହିତ ଘନ ନୀଳ ଆକାଶରେ ତାରାପଙ୍କ୍ତି ପରି ପ୍ରଭାସ୍ୱମାନ ହେଉଥିଲା । କେଉଁ ସୁନ୍ଦରନୟନା ପୀନପୟୋଧରା ନିଜର ଶରୀରକୁ ପୀତବସନରେ ଶୋଭିତ କରିଥିଲା । ତାହାର ଶୋଭା ପ୍ରଭାତକାଳୀନ ସୂର୍ଯ୍ୟ ଦ୍ୱାରା ଉଦ୍ଭାସିତ ପର୍ବତ ସଦୃଶ ଜ୍ୟୋତିର୍ମୟ ହୋଇପାରେ । କାହାର ବକ୍ଷ-ଦେଶରେ ମୁକ୍ତାହାର ବିଲମ୍ବିତ ହୋଇଥିଲା । ସତେ ଅବା ଧ୍ରୁବ-ଭାଦ୍ରବ ନକ୍ଷତ୍ରଦ୍ୱୟ ଉପରେ ଶତଭିଷାନକ୍ଷତ୍ରମାଳ ଶୋଭା ପାଉଥିଲା କି ? କିଏ ସତେଇଶଟି ମୁକ୍ତାଯୁକ୍ତ ନକ୍ଷତ୍ରମାଳ ପରିଧାନ କରିଥିଲା । ତାହାର ମୁଖ ଦେଖିଲେ ମନେ ହେଉଥିଲା—ସତେ କଅଣ ବୃହସ୍ପତି ରେବତୀଭୁବନରେ ଅଧିଷ୍ଠିତ ହୋଇଅଛନ୍ତି କି ? କାହାର ନାସାରେ ସୁବର୍ଣ୍ଣଦଣ୍ଡି ନିକଟରେ ମଣି-ନଥ ଶୋଭା ପାଉଥିଲା । ତାହାକୁ ଦେଖିଲେ ମନରେ ଚତୁର୍ଥୀ ଚନ୍ଦ୍ର ନିକଟରେ ବିଶାଖା ଅବସ୍ଥାନ କଲାପରି ବୋଧ ହେଉଥିଲା ।

ସକଳ ରମଣୀ ହସ୍ତରେ ପୂଜାଥାଳୀ ଧାରଣ କରିଥିଲେ । ସେମାନେ ବାହାରିବାରୁ ମନେ ହେଲା ସୂର୍ଯ୍ୟମୁଖୀ ଉପବନରେ ପୁଷ୍ପ ବିକଶିତ ହୋଇ ଉଠିଲା କି ? ବିରାଟରାଣୀ ସୁଦେଷ୍ଣା ଅମୂଲ୍ୟ ବସ୍ତ୍ରାଳଙ୍କାରରେ ସୁଶୋଭିତା ହୋଇ ସେମାନଙ୍କ ସଙ୍ଗେ ବାହାରିଲେ । ତାହାଙ୍କ ପ୍ରାସାଦରେ ସୈରିନ୍ଧ୍ରୀବେଶରେ ବାସକରୁଥିବା ସୁନ୍ଦରୀ ଦ୍ରୌପଦୀ ତାହାଙ୍କ ସହିତ ଚାଲିଲେ । ରାଣୀ ଓ ରାଜକନ୍ୟାମାନଙ୍କର ପୂଜାଉପକରଣ ସ୍ୱର୍ଣ୍ଣଥାଳୀରେ ଧରି

Digitized by srujanika@gmail.com

ଦାସୀମାନେ ଅନୁଗମନ କରୁଥିଲେ । ଅନ୍ତଃପୁରରୁ ଅନ୍ୟାନ୍ୟ ରମଣୀମାନେ ବିବିଧ ବେଶଭୂଷାରେ ସଜ୍ଜିତ ହୋଇ ସେମାନଙ୍କ ସଙ୍ଗେ ଯାଉଥିଲେ । ସେମାନେ ଅନ୍ତଃପୁରରୁ ବାହାରି ରାଜ-ଦାଣ୍ଡରେ ଉପସ୍ଥିତ ହେଲେ । ସତେ ଅବା କାମଦେବ ତୂଣୀରରୁ ଅସଂଖ୍ୟ ଶର ବାହାର କଲେ କି ? ଏହି ରମଣୀମାନଙ୍କ ମଧ୍ୟରେ ବୈଦେହୀ ନିଜ ଶୋଭାବଳିରେ ସ୍ୱର୍ଣ୍ଣହାର ମଧ୍ୟସ୍ଥିତ ହୀରକର ପଦକପରି ଦିଶୁଥିଲେ । ଏମାନଙ୍କୁ ଦେଖିଲେ ରତ୍ନାକରର ରତ୍ନରାଶି ଉପରେ ଦୃଷ୍ଟିପାତ ହେଲାପରି ବୋଧ ହେଉଥିଲା; ଅଥବା ସ୍ୱପ୍ନରେ ଅପ୍ସରା ପୁରରେ ପ୍ରବେଶ କଲାପରି ମନେ ହେଉଥିଲା । କିନ୍ତୁ ବାସ୍ତବରେ ଏ ଅପୂର୍ବ ଦୃଶ୍ୟ ସାଗରର ରତ୍ନଭଣ୍ଡାର ନୁହେ କିମ୍ବା ସ୍ୱର୍ଗର ଅପ୍ସରା ନୁହନ୍ତି । ଏହା ହେଉଛି, କୀଚକର ମରଣସୂଚକ ଉଲ୍କାପାତ ।

ବିବିଧରଙ୍ଗ ବସନରେ ମଣ୍ଡିତା ଅନ୍ତଃପୁରର ରମଣୀମାନେ ପୃଥିବୀ ବକ୍ଷରେ ଚାଲିଗଲା ବେଳେ ସରଳ ଇନ୍ଦ୍ରଧନୁର ଭ୍ରମ ଜାତ କଲା । ଦର୍ଶକମାନେ ଏହି ଶୋଭାକୁ ଦର୍ଶନ କରି ନିଜର ଚକ୍ଷୁକୁ ସାର୍ଥକ କଲେ ।

ବିରାଟରାଜଙ୍କ ଶ୍ୟାଳକ କୀଚକ ହିତଳପ୍ରାସାଦର ତୋରଣରେ ବସି ଏହି ରମଣୀ-ଉଦ୍ୟାନସ୍ଥିତ ପ୍ରତ୍ୟେକ କୁସୁମର ସୌନ୍ଦର୍ଯ୍ୟ କଳନା କରୁଥିଲା । ହଠାତ୍ ତାହାର ନେତ୍ର-ଭ୍ରମର ଦ୍ରୌପଦୀ ମୁଖପଦ୍ମରେ ଆବଦ୍ଧ ହେଲା । ସେ ସ୍ତମ୍ଭୀଭୂତ ହୋଇ ତାହାଙ୍କର ରୂପସୁଧା ପାନ କରିବାକୁ ଲାଗିଲା । ସେ ଭାବିଲା—ମୁଁ ପଦ୍ମ, ଚମ୍ପା, ମାଧବୀ, ମଲ୍ଲୀ, ମାଳତୀ, ଯୂଥି, ନିଆଳୀ, ଗୋଲାପ, ସେବତୀ, କାଞ୍ଚନ, କାଠଚମ୍ପା, ବକୁଳ ପ୍ରଭୃତି ନାନାଫୁଲର ମଧୁ ପାନ କରିଅଛି, କିନ୍ତୁ ଏ ପୁଷ୍ପଟି ସବୁଠୁ କେଉଁ ଭୂଲମାନ୍ୟ ହୋଇ

Digitized by srujanika@gmail.com

ପାଣ୍ଡବେ ନାହିଁ । ଗଗନରୂପୀ ପ୍ରମୋଦବନରେ ସ୍ୱୟଂ ଲକ୍ଷ୍ମୀଦେବୀ ବିହାର କରୁଥିବାବେଳେ ତାରା-ପୁଷ୍ପମାନେ ତାଙ୍କର ମନୋହରଣ କରନ୍ତି । ଅମାବାସ୍ୟା ରାତିରେ ସେଥିରେ କେତେ ତାରା ବିକଶିତ ନ ହୁଅନ୍ତି ? ଏବେ ସେ ପୁଷ୍ପ ପ୍ରତି ମୋର ସ୍ନେହ ଲୋପ ହେଲାଣି । ଏ ଯେଉଁ ପୁଷ୍ପଟି ଦେଖୁଛୁ ସେ ଯେପରି କି ଦେବରାଜ ଇନ୍ଦ୍ରଙ୍କ ମସ୍ତକରୁ ଖସି ପଡ଼ୁଛି । ପୂର୍ଣ୍ଣିମା ରଜନୀରେ ଚନ୍ଦ୍ରକିରଣ ଶୋଭିତ ପୁଷ୍ପଉଦ୍ୟାନ ପ୍ରତି ମୋର ଯେଉଁ ଶ୍ରଦ୍ଧା ଥିଲା, ତାହା ଏବେ ଲୋପ ପାଇଗଲା । ଏ ପୁଷ୍ପଟି ହେଉଛି, "କାମନାସିଦ୍ଧକାରୀ କନ୍ଦର୍ପ-କଳ୍ପ-ବୃକ୍ଷର ପୁଷ୍ପ ।" ଦ୍ରୌପଦୀଙ୍କର ଶରୀର କାନ୍ତିକୁ ଲକ୍ଷ୍ୟ କରି ସେ ଭାବିବାକୁ ଲାଗିଲା. "ଏହାର ଶରୀର କଅଣ ସୂର୍ଯ୍ୟକିରଣରେ ଗଠିତ । ଶନିଙ୍କର ନୀଳବର୍ଣ୍ଣ, ବୃହସ୍ପତିଙ୍କର ପୀତବର୍ଣ୍ଣ ଓ ମଙ୍ଗଳଙ୍କର ଲୋହିତ ବର୍ଣ୍ଣଦ୍ୱାରା ଏହି ସୂର୍ଯ୍ୟକିରଣର ସୃଷ୍ଟି ହୋଇଥିବ ! ଏହାର ଶରୀର ପୀତବର୍ଣ୍ଣ, କେଶରାଶି କୃଷ୍ଣବର୍ଣ୍ଣ ଓ ପଦଦ୍ୱୟ ରକ୍ତବର୍ଣ୍ଣ । ଏହାର ଅଧରରେ ଅରୁଣିମା ପ୍ରକାଶିତ । ସୁନିର୍ମଳ ପ୍ରେମଜଳରେ ଏହାର ମୁଖପଦ୍ମ ବିକଶିତ ହୋଇଥିଲା ପରି ବୋଧ ହେଉଅଛି ।"

କୀଚକର ମନଃରୂପକ ମତ୍ସ୍ୟରଙ୍କ ଦ୍ରୌପଦୀଙ୍କ ରୂପଲାବଣ୍ୟ ରୂପକ ଜଳରେ ମଜ୍ଜିଗଲା । ତାର ମନ ଓ ନେତ୍ର ଦ୍ରୌପଦୀଙ୍କ ରୂପରେ ଲାଖିଯିବାରୁ ଅନ୍ୟ ଇନ୍ଦ୍ରିୟମାନେ ମଧ୍ୟ ସେହି ଚକ୍ଷୁରଆଶ୍ରୟ ନେଲେ । ଏଣେ ରମଣୀମାନେ ଦୃଷ୍ଟିପଥ ଅତିକ୍ରମକରି ବନଦେଶ ଆଡ଼କୁ ଅଗ୍ରସର ହେବାରୁ କୀଚକକୁ ଚତୁର୍ଦ୍ଦିଗ ଅନ୍ଧକାରମୟ ଦେଖାଗଲା । ସେମାନଙ୍କର ମଞ୍ଜୀର (ପାଦଅଳଙ୍କାର)ର ମଧୁର ଧ୍ୱନିରେ ପୃଥିବୀପୃଷ୍ଠ ପ୍ରତିଧ୍ୱନିତ ହେଲା ଏବଂ ସେମାନଙ୍କ ଅଞ୍ଚଳ କାମଦେବର ପତାକା ଭଳି ଉଡ଼ିଲା । ସେମାନଙ୍କର

Digitized by srujanika@gmail.com

ରତ୍ନଅଳଙ୍କାରର ଜ୍ୟୋତିରେ ଗତିପଥ ଉଜ୍ଜ୍ୱଳ ଦେଖାଗଲା । ସତେ ଯେମନ୍ତ ସୌନ୍ଦର୍ଯ୍ୟ ସ୍ରୋତ ଦେବୀମନ୍ଦିର ଅଭିମୁଖରେ ପ୍ରବାହିତ ହେଲା । ଭଗୀରଥଙ୍କ ପଛରେ ଗଙ୍ଗା ଗତି କଲାପରି ଜନୈକ ତ୍ରହସ୍ତଙ୍କ ପଛରେ ରମଣୀମାନେ ଅଗ୍ରସର ହେଉଥିଲେ । ତରଳ ସୁବର୍ଣ୍ଣ ସଦୃଶ ଅଙ୍ଗବର୍ଣ୍ଣର ସୂର୍ଯ୍ୟକିରଣ ସେମାନଙ୍କ ଶରୀର ଉପରେ ପତିତ ହେଉଥିଲା । ଏହାଫଳରେ ସେମାନଙ୍କର ଶରୀରର କାନ୍ତି ବୃଦ୍ଧି ପାଉଥିଲା । କପାଳ, ଗଣ୍ଡ ଦେଶ ଓ ମୁଖମଣ୍ଡଳ ଦୀପ୍ତ ଦେଖାଯାଉଥିଲା । ଚିକ୍କଣ କେଶ ଓ ଚର୍ମରେ ଥିବା ରତ୍ନ-ଅଳଙ୍କାର, ଶରୀରର ଭୂଷଣାବଳୀ ଜ୍ୟୋତି ବିକୀରଣ କରିବାକୁ ଲାଗିଲେ । ସେମାନଙ୍କର ବସନର ଜରିରେ ସୂର୍ଯ୍ୟକିରଣ ପଡ଼ିବାରୁ ତାହା ମଧ୍ୟ ତେଜସ୍ୱାନ୍ ଦେଖାଯାଉଥିଲା । ବଦାନ୍ୟ ବ୍ୟକ୍ତିପରି ସୂର୍ଯ୍ୟ ନିଜର ଦୀପ୍ତି ବିତରଣ କରୁଥିଲା । ମନ୍ଦିରର ସୁବର୍ଣ୍ଣକଳସ ଏହି ଦୀପ୍ତି ଲାଭକରି ଦୀପ୍ତିମନ୍ତ ହେଲା । ଦୀପ୍ତିମନ୍ତ ସୁବର୍ଣ୍ଣକଳସ ଦୀପ୍ତିମନ୍ତମାନଙ୍କୁ ହିନ୍ଦୋଳରୂପକ କରରେ ଡାକିଲାପରି ବୋଧହେଲା । ରବିକିରଣ ରଞ୍ଜିତ ସାଗର ଲହରୀ ସୈକତ ବେଳାକୁ ଅଗ୍ରସର ହେଲାପରି ନାରୀମାନେ ମନ୍ଦିରର ଚନ୍ଦ୍ରକାନ୍ତ, ସୁଧାଧବଳିତ ସୋପାନମାଳା ଅତିକ୍ରମ କରିଗଲେ । ସେମାନେ ଦେବୀଙ୍କ ସମ୍ମୁଖରେ ଅର୍ଦ୍ଧବୃତ୍ତାକାରରେ ଦଣ୍ଡାୟମାନ ହୋଇ ପ୍ରୀତି ଓ ଭକ୍ତି ସହକାରେ ସୁଗନ୍ଧ ପୁଷ୍ପମାଳା ଅର୍ପଣ କଲେ । ସୁଦେଷ୍ଣା ଗନ୍ଧପୁଷ୍ପ ଦେଇ ସ୍ୱର୍ଣ୍ଣଦୀପଜାଳି ଦେବୀଙ୍କର ଆରତି କଲେ । ଅନ୍ୟ ରମଣୀ-ମାନେ ମଧ୍ୟ ଦୀପଧରି ଦେବୀଙ୍କର ଆରତି କଲେ । ରକ୍ତପୁଷ୍ପମାଳା-ଶୋଭିତା ଦେବୀଙ୍କ ଆଗରେ ଦୀପଧାରିଣୀ ରମଣୀମାନଙ୍କର ଶୋଭା ଦେଖି ମନେ ହେଲା, ସତେ ଅବା ରବିଙ୍କର ପ୍ରେମିକା ପ୍ରଭାଙ୍କର ଶୁଭାଗମନ ଦେଖି ପଦ୍ମବନ ସ୍ୱର୍ଣ୍ଣବୀଜ କୋଷ ଉପହାର

Digitized by srujanika@gmail.com

ହେଲ କି ? ଅଥବା ସିନ୍ଦୂରବର୍ଣ୍ଣା ସନ୍ଧ୍ୟାସୁନ୍ଦରୀର ବକ୍ଷଃ-ଦେଶରେ ରତ୍ନଦେବୀ ତାରକା-ହୀରକମାଳା ଲମ୍ବାଇ ଦେଲେ କି ? ଅଥବା ସନ୍ଧ୍ୟାକାଳୀନ ପଶ୍ଚିମ ଆକାଶ ସମକ୍ଷରେ ପର୍ବତମାଳା ଗ୍ରୀଷ୍ମକାଳୀନ ଅଗ୍ନି କଳସ ପରି ଶୋଭା ପାଉଅଛି କି ? ଦୀପାବଳୀର ଆଲୋକରେ ରମଣୀମାନଙ୍କର ଅଳଙ୍କାରରାଶି ସୂର୍ଯ୍ୟକିରଣ ସ୍ପର୍ଶରେ ଜଳକଣାପରି ଝଟକିଲା । ସେମାନଙ୍କର ଧୂପଗନ୍ଧରେ ମନ୍ଦିର ଆମୋଦିତ ହେଲା । ହୃଦୟର କାମନା ପ୍ରକାଶକରି ଓ ଦେବୀଙ୍କର ପ୍ରସାଦ ଗ୍ରହଣକରି ସେମାନେ ମନ୍ଦିର ତ୍ୟାଗ କଲେ ଏବଂ ନିଜ ଗୃହାଭିମୁଖରେ ଅଗ୍ରସର ହେଲେ । ଗୃହରେ ଉପସ୍ଥିତ ହୁଅନ୍ତେ ସେମାନେ ଶିଶୁମାନଙ୍କୁ ଦେବୀଙ୍କ ଫୁଲ ଓ ପ୍ରସାଦ ବିତରଣ କରି କହିଲେ, "ଦେବୀଙ୍କ ପ୍ରସାଦରୁ ଏମାନେ ସୁଖରେ ରହନ୍ତୁ ।"

—O*O—

# ତୃତୀୟ ଅଧ୍ୟାୟ

ଦିବସର ଅବସାନ ହେବାରୁ ସନ୍ଧ୍ୟା ଉପଗତ ହେଲା । ତତ୍ପରେ ରଜନୀ ଉପସ୍ଥିତ । ସତେ ଯେପରି କି ଦିବସ ସୂର୍ଯ୍ୟ-ଶରୀରକୁ ଖଣ୍ଡ ଖଣ୍ଡ କରି ଚନ୍ଦ୍ର ଓ ତାରାମାନଙ୍କୁ ସୃଷ୍ଟି କଲା । ନୀଳ ଆକାଶରେ ଚନ୍ଦ୍ର ତାରାମାନଙ୍କ ଦ୍ୱାରା ବେଷ୍ଟିତ ହୋଇ କୌମୁଦୀ ବିତରଣ କରିବାକୁ ଲାଗିଲେ । ଏହି ତାରକାବୃତ ଚନ୍ଦ୍ର ବିଷ୍ଣୁଙ୍କ ବକ୍ଷଃସ୍ଥିତ କୌସ୍ତୁଭମଣି ପରି ଶୋଭା ପାଇଲା । ସତେ ଅବା ସୂର୍ଯ୍ୟ-କିରଣ ସ୍ପର୍ଶରେ ଗଳାଯାଇ ଚନ୍ଦ୍ରର ସୃଷ୍ଟି ହେଲାକି ? ଚକ୍ରବାକର ସୁଖ ତିରୋହିତ ହେଲା ଓ ଚକୋରର ସୁଖ ବୃଦ୍ଧି ପାଇଲା ।

Digitized by srujanika@gmail.com

ପଦ୍ମବନର ସୌନ୍ଦର୍ଯ୍ୟ ହ୍ରାସ ହେବା ସଙ୍ଗେ ମଲ୍ଲିକାର ଶୋଭା ବୃଦ୍ଧି ଲାଭ କଲା । ସୂର୍ଯ୍ୟମୁଖୀର ମୁଖ ଶୋଭା ନବମାଳିକା ମୁଖରେ ଦେଖା ଦେଲା । ସମୀରଣ ପୁଷ୍ପମାନଙ୍କୁ ଆଲିଙ୍ଗନ କରି ରେଣୁ ଦ୍ୱାରା ଧୂସରିତ ହୋଇ ଧୀରେ ଧୀରେ ବହିବାକୁ ଲାଗିଲା । ଏହି ପବନରେ ବୃକ୍ଷ ଲତାମାନେ ଦୋଳାୟମାନ ହେଲେ । ଚତୁର୍ଦ୍ଦିଗ ଆମୋଦିତ ହେଲା । ଚନ୍ଦ୍ରକିରଣ ସ୍ପର୍ଶରେ ସମୁଦ୍ରର ବକ୍ଷ ସ୍ଫୀତ ହୋଇ ଉଠିଲା । ସେ ତରଙ୍ଗ ଦ୍ୱାରା ନଦୀକୁ ପଛକୁ ଠେଲି ଦେଲା । ଏହା ଫଳରେ ନଦୀମାନଙ୍କରେ ଜୁଆରର ସୃଷ୍ଟି ହେଲା । ଚନ୍ଦ୍ର ରମଣୀ-ମାନଙ୍କ ବଦନରେ ନୂତନ କାନ୍ତିର ପ୍ରଲେପ ବୋଳି ଦେଲା ପରି ବୋଧ ହେଲା ଏବଂ ପୁରୁଷମାନେ ସେହି ମୁଖ ଦର୍ଶନରେ କନ୍ଦର୍ପର ବଶୀଭୂତ ହେଲେ । ରସିକମାନେ ଶରୀରରେ ଚନ୍ଦନ ଲେପନ କରି, ଗଳାରେ ଚମ୍ପକମାଳ ଲମ୍ବାଇ ପଲଙ୍କରେ ପ୍ରେମିକାମାନଙ୍କ ସଙ୍ଗସୁଖ ଉପଭୋଗ କଲେ । କ୍ରମେ ବସନ୍ତ ନଗରୀରେ ଗୃହଦ୍ୱାର ବନ୍ଦ ହୋଇଗଲା; ନରନାରୀଗଣ ନିଦ୍ରାକ୍ରୋଡ଼ରେ ଆଶ୍ରୟ ନେଇ ସ୍ୱପ୍ନରେ ବିଭୋର ହୋଇଗଲେ ।

କିନ୍ତୁ କୀଚକ କାମତୃଷ୍ଣାରେ ଅଧୀର ହୋଇ ଅନିଦ୍ରା ରହିଅଛି । ସେ ମୃଗତୃଷ୍ଣା ପଛରେ ଧାଇଁଲା ପରି ଦ୍ରୌପଦୀଙ୍କ ବିଷୟ ଚିନ୍ତା କରୁଅଛି । କିନ୍ତୁ ସେ ଯେତେ ବେଶୀ ଚିନ୍ତା କରୁଛି, ତାର ହୃଦୟର ଦାହ ସେତିକି ବୃଦ୍ଧି ଲାଭ କରୁଛି ମାତ୍ର । ତପ୍ତ ତୈଳ-କଟାହରେ ଜଳ ପକାଇଲେ ତାହା କି ଶୀତଳ ହୋଇପାରେ ? ପୂର୍ବ ପ୍ରହରରୁ ସେ ଦାସୀଠାରୁ ଅବଗତ ହୋଇଥିଲା ଯେ ଏହି ଅପୂର୍ବ ରୂପବତୀ ରମଣୀ ସୈରିନ୍ଧ୍ରୀ ନାମରେ ରାଜ ଅନ୍ତଃପୁରରେ ବାସ କରୁଅଛି । ତାର ପିତା କିଏ, ତାର ପତି ଅଛନ୍ତି କି ନା, ଏଥିପୂର୍ବରୁ ସେ କେଉଁଠାରେ ଥିଲା, କି ଉଦ୍ଦେଶ୍ୟରେ ସେ

Digitized by srujanika@gmail.com

ରାଜପୁରୀରେ ଅବସ୍ଥାନ କରୁଅଛୁ, ଏ ସବୁ ବିଷୟରେ କିଛି ଜାଣି ପାରି ନ ଥିଲା । କେବଳ ଏତିକି ଜାଣିଥିଲା ଯେ, ବେଶଭୂଷାରୁ ସେ ସଧବା ବୋଲି ମନେ ହୁଏ, କଥା ଓ ଆଚରଣରୁ ସେ ଉଚ୍ଚକୁଳ ଜାତ ବୋଲି ବୋଧହୁଏ । ସୌନ୍ଦର୍ଯ୍ୟ ଓ ଭଙ୍ଗୀରେ ସେ ରାଜରାଣୀଠାରୁ ମଧ୍ୟ ଉଚ୍ଚ ଆସନ ଲାଭ କରିପାରେ । ତାର ସ୍ନେହ ଓ ଦୟାପୂର୍ଣ୍ଣ ବ୍ୟବହାର ଓ ଚରିତ୍ରବଳରେ ଅନ୍ତଃପୁରର ସକଳ ରମଣୀ ତାର ବଶୀଭୂତ । ଦାସୀଠାରୁ ଏହି ସମ୍ବାଦ ପାଇବା ବେଳୁ ସେ ତାହାଙ୍କ ପ୍ରେମଲାଭ ପାଇଁ ବ୍ୟାକୁଳ ହୋଇପଡ଼ିଛି । ତାହା ଛଡ଼ା ସେ ଅନ୍ୟ କୌଣସି ବିଷୟ ଚିନ୍ତା କରିପାରିଲା ନାହିଁ । କାମ ଦେବର ପ୍ରଭାବରେ ସେ ନିଜର ମନକୁ ବଶୀଭୂତ କରି ନ ପାରି ନ୍ୟାୟ ଅନ୍ୟାୟ ଭୁଲିଗଲା । କିପରି ସେହି ସୈରନ୍ଧ୍ରୀଙ୍କୁ ନିଜର କରାୟତ୍ତ କରିବ ତାହାହିଁ ତାର ଏକମାତ୍ର ଚିନ୍ତା ହେଲା । ସେ ଭାବିଲା ଯେ ନିଜର ବୀରତ୍ୱ ଓ ଅତୁଳ୍ୟ ସୈନ୍ୟ ବଳରେ ସେ ସୈରନ୍ଧ୍ରୀର ପ୍ରେମଲାଭ କରିପାରିବ । ସୈରନ୍ଧ୍ରୀ ସମ୍ମତ ହେଲେ ସେ ତାକୁ ବିବାହ କରିବ; ତାହା ନ ହେଲେ ତାଙ୍କ ଗୁପ୍ତ ପ୍ରଣୟରେ ଜୀବନ ଅତିବାହିତ କରିବ । ସେ ଭାବିଲା ଯେ, ସେ ସୁନ୍ଦର କୁଞ୍ଜ ମଧ୍ୟରେ ସୈରନ୍ଧ୍ରୀ ସହିତ ସାକ୍ଷାତ କରୁଥିବ ଓ ତାର ଆଲିଙ୍ଗନ ଲାଭ କରି ହୃଦୟର ତାପ ଶାନ୍ତ କରୁଥିବ । ସେ କେତେବେଳେ ଅଙ୍କାଳିକା ଉପରେ ବସି ତା ଆଡ଼କୁ ଚାହିଁ ରହୁଥିବ; ସେତେବେଳେ ଇନ୍ଦ୍ରପଦ ତା ନିକଟରେ ତୁଚ୍ଛ ହେବ । ପୁଣି କେତେବେଳେ ନିଭୃତ କକ୍ଷରେ ତାର ଅଧର ସୁଧା ପାନ କରୁଥିବ । ସେତେବେଳେ ସ୍ୱର୍ଗସୁଖ ତାର କରତଳ ବୋଲି ମନେ ହେବ । ସୈରନ୍ଧ୍ରୀର ସକଳ କାମନା ପୂରଣ କରିବାକୁ ସେ ଚେଷ୍ଟା କରିବ ।

Digitized by srujanika@gmail.com

ଏହିପରି ଚାତକ ମନେ ମନେ ଆଶାର ସୌଧ ଗଢ଼ିବାକୁ ଲାଗିଲା । ସେ ଜାଣିପାରି ନ ଥିଲା ଯେ ତା ପକ୍ଷରେ ଏପରି କଳ୍ପନା କେବଳ ପତଙ୍ଗ ପକ୍ଷରେ ଅଗ୍ନି ପ୍ରତି ଧାବମାନ ହେବା ତୁଲ୍ୟ । ତା ପକ୍ଷରେ ରଜନୀ ଅତିଶୟ ଦୀର୍ଘ ଓ ଅସହ୍ୟ ବୋଧ ହେଲା । ସେ ବାରମ୍ବାର ଉଠି ପ୍ରଭାତୀ ତାରାର ଉଦୟକୁ ଅପେକ୍ଷା କରୁଥାଏ । କୌଣସି କାକର ରବ ଶୁଣି ଉଠିଲା କ୍ଷଣି ରାତି ଶେଷ ହେଲାଣି ବୋଲି ଭାବ ଦୂତୀକୁ ପଠାଇବା ସକାଶେ ବ୍ୟଗ୍ର ହୋଇ ଉଠୁଥାଏ ।

ଯାହା ହେଉ ଅବଶେଷରେ ଚନ୍ଦ୍ର ଅସ୍ତ ହେଲେ; କକ୍କୁକପକ୍ଷୀମାନେ ରାବିଲେ । ପ୍ରଭାତୀ ତାରା ଅରୁଣର ଦୀପ୍ତି ମଧ୍ୟରେ ଲୁଚିଗଲା । ପକ୍ଷୀମାନେ କଳରବ କଲେ । ବ୍ରାହ୍ମଣମାନେ ସ୍ନାନକରି ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ପ୍ରଦାନ କଲେ । ସୂର୍ଯ୍ୟ ଦେବତା ମସ୍ତକରେ କିରଣମୁକୁଟ ପରିଧାନକରି ଉଦୟାଚଳରେ ସ୍ୱର୍ଣ୍ଣସିଂହାସନରେ ଆବିର୍ଭୂତ ହେଲେ । ରବିକିରଣ ସମ୍ପାତରେ ପଦ୍ମ ବିକଶିତ ହେଲା । ନଦୀର ନିର୍ମଳ ଜଳରେ ମତ୍ସ୍ୟମାନେ ସନ୍ତରଣ କରିବାକୁ ଲାଗିଲେ । ଜଳରେ ପକ୍ଷୀମାନେ ମଧୁର ଶବ୍ଦ କଲେ । ଚକ୍ରବାକମାନେ ମୃଣାଳଦଣ୍ଡ ଭକ୍ଷଣରେ ରତ ହେଲେ । ସୂର୍ଯ୍ୟଙ୍କ ଆଗମନରେ ନିଶାଚରମାନେ ଲୁଚି ରହିଲେ, ଚୋରମାନେ ଭୟ ପାଇଲେ । ଜନ ସାଧାରଣ ନିଜ ନିଜ କର୍ମରେ ରତ ହେଲେ । ପକ୍ଷୀମାନେ ଆହାର ସନ୍ଧାନରେ ବାହାରି ପଡ଼ିଲେ ।

ଏହି ସମୟରେ ଏକ ଦାସୀ ସୁବର୍ଣ୍ଣ ଝରିରେ ସୁବାସିତ ଜଳ ଆଣି ମୁଖ ପ୍ରକ୍ଷାଳନ ନିମନ୍ତେ ଚାତକକୁ ଦେଲା । ଚାତକ ଏହି ଦାସୀକୁ ଉପଯୁକ୍ତ ମନେ କରି କହିଲା, "ମୋର ଶରୀର ଉତ୍ତପ୍ତ ହୋଇଅଛି । ସେଥିରେ ଶୀତଳ ଚନ୍ଦନ ଲେପି ପାରିବୁ କି ?" ଦାସୀ ଚାତକର ପ୍ରକୃତ ଅଭିପ୍ରାୟ ଜାଣି ନ ପାରି କହିଲା, "ଏ

Digitized by srujanika@gmail.com

କଣ ଆଶ୍ଚର୍ଯ୍ୟ କଥା ? ଆଦେଶ ଦେଲେ ଏହିକ୍ଷଣି ଚନ୍ଦନ, କର୍ପୂର, ସୁବାସିତ ପଦ୍ମ ଆଣି ଦେଇପାରେ ।” କୀଚକ କହିଲା, “ନା, ମୁଁ ଯେଉଁ ଚନ୍ଦନ ଇଚ୍ଛା କରୁଛି, ତାହା ଦେଇ ପାରିଲେ ତୋର ମନ ଇଚ୍ଛା ଧନ, ବସନ, ଭୂଷଣ ତୋତେ ପୁରସ୍କାର ଦେବି ।” ଦାସୀ କହିଲା, “ଆପଣଙ୍କର କେଉଁ ଚନ୍ଦନରେ ଅଭିଳାଷ ତାହା ଜଣାଇଲେ ମୁଁ ତାହା ଶୀଘ୍ର ଉପସ୍ଥିତ କରାଇବି ।” କୀଚକ କହିଲା, “ତୁ ଦେଖିଥିବୁ, ଆମ ରାଜଅନ୍ତଃପୁରରେ ଜଣେ ସୁନ୍ଦରୀ ଅଛି; ସେ ଦେଖିବାକୁ ସ୍ୱର୍ଗର ଦେବୀମୂର୍ତ୍ତି ପରି । ନାରୀମାନଙ୍କ ମଧ୍ୟରେ ସେ ସୈରନ୍ଧ୍ରୀ ନାମରେ ପରିଚିତ । ସେହି ହେଉଛି ମୋର ଈପ୍ସିତ ଚନ୍ଦନ ।”

ଏହା ଶୁଣି ଦାସୀ କହିଲା, “ମୁଁ ସୈରନ୍ଧ୍ରୀକି ଜାଣେ । ବାସ୍ତବରେ ସେ ଅତି ସୁନ୍ଦରୀ । ସେ ପତି-ବିରହିଣୀ ହୋଇ ଏକାକିନୀ ଜୀବନ ଯାପନ କରୁଅଛି । ମୁଁ ତାହାର ମନକୁ ଆପଣଙ୍କ ପ୍ରତି ଆକର୍ଷଣ କରିପାରିବି । ଆପଣଙ୍କୁ ପାଇବା ତା ପକ୍ଷରେ ଇନ୍ଦ୍ରପଦ ପ୍ରାପ୍ତି ତୁଲ୍ୟ ହେବ । ବିକସିତ କୁସୁମ କେବେ ଭ୍ରମରକୁ ତା ପାଖରୁ ଠେଲି ଦିଏ ନାହିଁ । ମୁଁ ଯାଇ ସେହି ସୁନ୍ଦରୀକୁ ଛଳେ, ବଳେ, କୌଶଳେ ଆପଣଙ୍କ ପ୍ରଣୟ ପାଶରେ ଆବଦ୍ଧ କରିବି । ମାତ୍ର ଏ ବିଷୟ ଯେପରି ମହାରାଣୀଙ୍କର କର୍ଣ୍ଣଗୋଚର ନ ହୁଏ । ସେ ଏ କଥା ଜାଣିପାରିଲେ ମୋର ସର୍ବନାଶ ସାଧନ କରିବେ । ଆପଣଙ୍କଠାରୁ ପାଟଶାଢ଼ୀ ବା ଅଳଙ୍କାର ନେବା ମୋ ପକ୍ଷରେ ଉଚିତ ନୁହେ । ସେ ସବୁ ଦେଖିଲେ ମହାରାଣୀଙ୍କର ମୋ ପ୍ରତି ସନ୍ଦେହ ଜନ୍ମିବ ।”

ଏହିପରି କହି ଦାସୀ କୀଚକକୁ ପ୍ରଣାମ କରି ବିଦାୟ ହେଲା । ସେ ସୈରନ୍ଧ୍ରୀଙ୍କ ନିକଟକୁ ଯାଇ ତାଙ୍କ ସଙ୍ଗେ ହସି ହସି ଗଲ୍ପ

କହିବାକୁ ଲାଗିଲା । ସୈରନ୍ଧ୍ରୀ ପଚାରିଲେ, "ଆଜି ତ ତୋର ମନରେ ବହୁତ ଆନନ୍ଦ !" ଦାସୀ ଉତ୍ତର କଲା, "ତୁମ୍ଭଙ୍କୁ ଦେଖିଲା କ୍ଷଣି ମୋ ମନରୁ ଦୁଃଖ ଉଭେଇ ଯାଏ । ତୁମ୍ଭର ଶୋଭା ଦେଖିଲେ, ଦୁଃଖ କାହିଁ ରହିବ ? ମୋ କଥା ଛାଡ଼ ଦିଅ, ଯେ କୌଣସି ଲୋକ ତୁମ୍ଭଙ୍କୁ ଥରେ ଦେଖିଲେ ଆଉ ଭୁଲି ପାରିବ ନାହିଁ । କେତେଦିନ ହେଲା ତୁମ୍ଭଙ୍କୁ ନ ଦେଖି ମୋର ମନ ଧାଇଁ ହେଉଥିଲା । ସେଥିପାଇଁ ଆଜି ଆସିଲି ।" ଏହା ଶୁଣି ସୈରନ୍ଧ୍ରୀ କହିଲେ, "ତୋ ମୁହଁରୁ ଏମିତି କଥା କେବେ ଶୁଣି ନ ଥିଲି । ଆଜି ତୁ ମୋର ଏଭଳି ଅଯଥା ପ୍ରଶଂସା କରୁଛୁ କାହିଁକି ? ଯାହାକୁ ପ୍ରଶଂସା କରିବାର କଥା, ତାକୁ ପ୍ରଶଂସା କର । ମୋର ପ୍ରଶଂସା କରିବାରେ କି ଫଳ ? ବଗିଚାର ଫୁଲଗଛରେ ପାଣି ଦେଲେ ସିନା ଲାଭ ଅଛି । ବଣରେ ଗଛରେ ପାଣି ଦେଇ କି ଲାଭ ?"

ଦାସୀ କହିଲା, "ତୁମ୍ଭେ ଯାହା କହିଲ, ତାହା ସତ୍ୟ । ଅଭାଗ୍ୟକୁ ତୁମ୍ଭର ସୌନ୍ଦର୍ଯ୍ୟ-କୁସୁମ ବଣର ଫୁଲ ପରି ବଣରେ ଝଡ଼ି ପଡ଼ୁଛି । ସେ ଫୁଲକୁ କେହି ନେଇ ମସ୍ତକରେ ଦେଲେ ତାହା ସାର୍ଥକ ହୁଅନ୍ତା ! ତା ନ ହେଲେ ଫୁଲର ସୌନ୍ଦର୍ଯ୍ୟ ବଢ଼ିବ ନାହିଁ କି ଦେବତାଙ୍କର ସନ୍ତୋଷ ହେବ ନାହିଁ ।" ସୈରନ୍ଧ୍ରୀ କହିଲେ, "ତୋ କହିବା ଅନୁସାରେ ମୁଁ ବଣଫୁଲ ସତ, କିନ୍ତୁ ପାଞ୍ଚଟି ଗନ୍ଧର୍ବ ସେହି ଫୁଲକୁ ଭୋଗ କରିବାକୁ ଅଛନ୍ତି । ସେ ଫୁଲକୁ ଆଉ କେହି ତୋଳିବା ଦୂରେ ଥାଉ, ତା ପ୍ରତି ଲୋଭ କରି ଦୃଷ୍ଟିରେ ଚାହିଁବାର ଜାଣିଲେ ସେ ପଞ୍ଚ ଗନ୍ଧର୍ବ ତାର ଜୀବନ ରଖିବେ ନାହିଁ ।"

ଏହା ଶୁଣି ଦାସୀ କହିଲା, "ମୋ ମତରେ ଏମିତି ଛଳନା କରି ନିଜ ସୌନ୍ଦର୍ଯ୍ୟକୁ ଅପମାନ ଦେବା ଉଚିତ ନୁହେ । ତୁମ୍ଭର

Digitized by srujanika@gmail.com

ଇଚ୍ଛା ଥିଲେ ମୁଁ ତୁମ୍ଭର ଉପଯୁକ୍ତ ନାୟକ ସହିତ ତୁମ୍ଭର ମିଳନ କରାଇପାରିବି । ଆମର ମହାରାଣୀ ସୁଦେଷ୍ଣାଙ୍କ ଭାଇ କୀଚକ ବିରାଟର ଦ୍ୱିତୀୟ ରାଜାତୁଲ୍ୟ । ସେ ନିଜ ବାହୁବଳରେ ବିରାଟ ରାଜ୍ୟ ରକ୍ଷା କରିଥିବାରୁ ରାଜା ଆନନ୍ଦରେ ରାଜତ୍ୱ କରୁଅଛନ୍ତି । ଏଥିପାଇଁ ସାମନ୍ତ ରାଜା ତଥା ପ୍ରଜାବର୍ଗ ତାଙ୍କୁ ରାଜାଙ୍କ ପରି ମାନ୍ୟ କରୁଅଛନ୍ତି । ଏକେ ମହାରାଣୀଙ୍କର ଭ୍ରାତା, ଦ୍ୱିତୀୟତଃ ରାଜାଙ୍କର ଆଦରର ପାତ୍ର । ଯେତେ ଯେପରି ସୁନାରେ ସୋହାଗା ବା କ୍ଷୀର ସଙ୍ଗେ ଖଣ୍ଡର ସଂଯୋଗ ଘଟିଛି । କୀଚକଙ୍କର ଶ୍ରୀମୁଖରୁ ଯାହା ଆଦେଶ ହୁଏ, ଲୋକେ ତାହା ପାଳନ କରୁଅଛନ୍ତି । ତାଙ୍କର ମନର ଗତି ଯେଉଁ ଆଡ଼କୁ, ରାଜଶକ୍ତିର ଗତି ମଧ୍ୟ ସେହି ଆଡ଼କୁ । ସଂସାରରେ କଥା ଅଛି, ଧନ ଦେଖିଲେ ଲୋକଙ୍କ ମନ ଭୁଲିଯାଏ । ଧନ ପାଇଁ ଲୋକେ ଯୁଦ୍ଧରେ ପ୍ରାଣ ଦେଇଥାନ୍ତି । ଧନବଳରେ ଲୋକ ଦାତା, ମାନୀ, ଜ୍ଞାନୀ ସବୁ ହୋଇପାରେ । ସମସ୍ତେ ଧନର ଦାସ । ଯାହାର ଧନ ଅଛି ସେ ହୁଏ ପ୍ରଭୁ, ଯାହାର ଧନ ନାହିଁ, ସେ ହୁଏ ଦାସ । ତୁମ୍ଭର ଧନ ଥିଲେ ତୁମ୍ଭେ କାହିଁକି ପରବଶରେ ରହିଥାନ୍ତ ? ମନୁଷ୍ୟ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଏହି ଧନ ଉପରେ ନିର୍ଭର କରି ରହିଥାଏ । ସେଥିପାଇଁ ପରବ୍ରହ୍ମ ଲକ୍ଷ୍ମୀଙ୍କ ହାତରେ ଧନର ଅଧିକାର ଦେଇଅଛନ୍ତି । ନାରୀମାନେ ସ୍ୱଭାବତଃ ଧନିକମାନଙ୍କ ପ୍ରତି ଆକୃଷ୍ଟ ହୋଇଥାନ୍ତି । ବିଜୁଳି କେବଳ ଜଳପୂର୍ଣ୍ଣ ମେଘରେ ବିଳାସ କରିଥାଏ ପିଲା ! ଆଉ ଗୋଟିଏ କଥା; ସୁନ୍ଦରୀ ରମଣୀ ପରାକ୍ରମଶାଳୀ ବୀର ଇଚ୍ଛା କରେ । ସୀତା ରାମଚନ୍ଦ୍ରଙ୍କ ବଳ ଦେଖି ତାଙ୍କୁ ପତିରୂପେ ଗ୍ରହଣ କରିଥିଲେ । ସେହିପରି ଦ୍ରୌପଦୀ ବୀର ଅର୍ଜୁନଙ୍କୁ ବରଣ କରିଥିଲେ । ଆଜି କୀଚକଙ୍କ ନଗର ଦ୍ୱିତୀୟ ଇନ୍ଦ୍ରଭୁବନ ପରି ହୋଇଅଛି । ବିରାଟରାଜ କୀଚକଙ୍କ ବାହୁବଳକୁ

Digitized by srujanika@gmail.com

ଆଶ୍ରମ କରି ରହିଅଛନ୍ତି । ଏଭଳି ଧନବନ୍ତ ପରାକ୍ରମଶାଳୀ ନାଟକର ପ୍ରେମିକା ହେବା ସୌଭାଗ୍ୟର କଥା । ସୂର୍ଯ୍ୟଙ୍କର କିରଣରେ କି ସୁଖ ତାହା କେବଳ ପଦ୍ମିନୀ ଜାଣିପାରେ ।"

ସୈରନ୍ଧ୍ରୀ ଏ ସବୁ ଶୁଣି କହିଲେ, " ମୁଁ ତ ପଦ୍ମିନୀ ନୁହେଁ; ସୂର୍ଯ୍ୟଙ୍କୁ କାହିଁକି ଲୋଡ଼ିବି ? ମୁଁ ବଣର ଫୁଲ, ବଣଦେବତାଙ୍କ ସନ୍ତୋଷ ପାଇଁ ଫୁଟିଥିବି ।"

ଦାସୀ କହିଲା, "ମୋ କଥା ଶୁଣ ! ବୃଥା ଅଭିମାନ କଲେ ସୁଖ ପାଇବା ଦୂରେ ଥାଉ କେବଳ ଦୁଃଖ ଓ ଅପମାନ ପାଇବ । ଗଛ-ଅଗରେ ଆମ୍ବ ପାଚିଥାଏ । ସେ ତା ମନକୁ କାହାରି ହାତରେ ଖସି ପଡେ ନାହିଁ । ମାତ୍ର ପିଲାମାନେ ଟେକା ଫିଙ୍ଗି ତାକୁ ଆଣନ୍ତି । ମୁଁ ଜାଣେ, ତୁମ୍ଭେ ଏଠାରେ ରହିବା ଦିନୁଁ ତୁମ୍ଭର ପରବସ୍ତା ଅଭିମାନ ସରିଯାଇଛି । କୀଚକଙ୍କର ଦୃଷ୍ଟି ତୁମ୍ଭ ଉପରେ ପଡ଼ିଛି । ସୂର୍ଯ୍ୟ ଯେଉଁ ରାଶିରେ ରହନ୍ତି, ସେ ରାଶିରେ ଥିବା ଗ୍ରହତାରାଙ୍କର ଆଉ ଦୀପ୍ତି ରହେ କି ?"

ସୈରନ୍ଧ୍ରୀ ଉତ୍ତର କଲେ, "ତୁ ଯେତେ ସେହି କଥା କହିଲେ ସୁଦ୍ଧା ମୋର ମନ କେବେହେଁ ଟଳିବ ନାହିଁ । କେବଳ ମନକଷ୍ଟହିଁ ସାର ହେବ । କେତେ ଉଜ୍ଜ୍ୱଳ ଗ୍ରହ କେତେ କେତେ ଦିଗକୁ ଆଶା କରିଥାନ୍ତି; କିନ୍ତୁ ଧ୍ରୁବତାରା ସବୁବେଳେ ସେହି ଉତ୍ତରଦିଗକୁ ଚାହିଁଥାଏ ।"

ଦାସୀ କହିଲା, "ତୁମ୍ଭର ପତି ଯଦି ଥାଆନ୍ତି, ତେବେ ସେ ଜାଣିପାରିବେ କିପରି ? ତୁମ୍ଭେ ଗୁପ୍ତ ପ୍ରଣୟରେ ମାତି ଅତୁଳ ସମ୍ପଦ ଭୋଗ କରିପାରିବ । କୁମୁଦମାନେ ନିଶାକରର ପ୍ରେମରେ ପ୍ରଫୁଲ୍ଲ ହୁଏ ସତ; କିନ୍ତୁ ଚନ୍ଦ୍ର ନଥିଲେ କଅଣ ଅନ୍ଧକାରରେ ମଧ୍ୟ କୁମୁଦମାନେ ବିକସିତ ହୁଏ ନାହିଁ ?"

Digitized by srujanika@gmail.com

ସୈରନ୍ଧ୍ରୀ ବିରକ୍ତି ପ୍ରକାଶ କରି କହିଲେ, "ମୁଁ ଜାଣିପାରିଲି ଯେ ତୋର ଉଦ୍ଦେଶ୍ୟ ଭଲ ନୁହେଁ । ତୁ ଏଠାରୁ ଚାଲିଯାଅ, ଆଉ ମୋ ପାଖକୁ କେବେ ଆସିବୁ ନାହିଁ । ଏତିକି ଜାଣିଥାଅ ଯେ ଯଦି କେହି ମୋ ପ୍ରତି ଅତ୍ୟାଚାର କରେ, ତେବେ ମୋର ସ୍ୱାମୀମାନେ ତାର ପ୍ରାଣ ନେବେ । ମୁଁ ବିରାଟରାଜାଙ୍କ ଅନ୍ନରେ ପ୍ରତିପାଳିତ; ତେଣୁ ତାଙ୍କର ନିନ୍ଦା କରି ପାରିବି ନାହିଁ । ସେ ଯଦି ଅନ୍ୟାୟ ଆଚରଣ କରନ୍ତି, ତେବେ ଧର୍ମ ତାଙ୍କୁ ପ୍ରତିଫଳ ଦେବ । ଯେଉଁ ରାଜା ରାଜଶକ୍ତିର ଅପବ୍ୟବହାର କରେ ତାର ବିନାଶ ନିଶ୍ଚିତ ।"

ସୈରନ୍ଧ୍ରୀଠାରୁ ଏପରି ନୈରାଶ୍ୟବ୍ୟଞ୍ଜକ ଉତ୍ତର ପାଇ ଦାସୀ ସେଠାରୁ ପଳାଇଗଲା । ଚତୁର ଦାସୀର ବାକ୍ୟରେ କି ସୈରନ୍ଧ୍ରୀଙ୍କର ମନ ଭୁଲି ଯାଆନ୍ତା ? ଠେକୁଆଧରା ଜାଲରେ ସିଂହ ଧରାପଡ଼ିବା କେବେ ଶୁଣାଯାଇଛି କି ?

———

# ଚତୁର୍ଥ ଅଧ୍ୟାୟ

ଦାସୀ ନିରାଶ ହୋଇ ସୈରନ୍ଧ୍ରୀଙ୍କ ନିକଟରୁ ନବରକୁ ପ୍ରସ୍ଥାନ କଲା । ରାବଣର ଦୂତୀ ସୀତାଙ୍କଠାରୁ ନୈରାଶ୍ୟରେ ଫେରିଗଲା ପରି ସେ ଫେରିଗଲା । କୀଚକ ନିକଟରେ ମସ୍ତକ ନତକରି ସେ ଜଣାଇଲା, "ହେ ରସିକଶେଖର, ମୁଁ ଯେତେ ପ୍ରକାରେ ବୁଝାଇ କହିଲେ ସୁଦ୍ଧା ସେ ସୈରନ୍ଧ୍ରୀ ଆପଣଙ୍କ ପ୍ରତି ଅନୁରାଗ ପ୍ରକାଶ କଲାନାହିଁ । ଶୁଣିଲି ଯେ ପାଞ୍ଚଜଣ ଗନ୍ଧର୍ବ ତାର ପତି ଅଛନ୍ତି । ସେମାନେ କନ୍ଦର୍ପଠାରୁ ବଳି ସୁନ୍ଦର । ଯଦି ତାହା ହୋଇଥାଏ, ତେବେ ସ୍ୱପତି ଗ୍ରହଣରେ ତାର ଆପତ୍ତି କାହିଁକି ?

Digitized by srujanika@gmail.com

ମୁଁ ଅନ୍ୟ ଏକ ଉପାୟ ଚିନ୍ତା କରିଛି । ସେହି ଉପାୟ ଅବ୍ୟର୍ଥ ହେବ । ତାହାର ବଳରେ ମୁଁ ସେ ବନ-ହରିଣୀରୂପିଣୀ ସୈରନ୍ଧ୍ରୀଙ୍କୁ ବଶ କରିପାରିବି । ଏଥିରେ ଆପଣଙ୍କ ମତ କଅଣ ?''

କୀଚକ ଅଧୀର ହୋଇ କହିଲା, "ସେ ଉପାୟ କଅଣ, ଶୀଘ୍ର କହ । ଯେ କ୍ଷୁଧାତୁର, ତାକୁ ଅମୃତ ଦେବାକଥା କଏ ପଚାରେ ?" ତହୁଁ ଦାସୀ କହିଲା, "ମୁଁ ମହାରାଣୀଙ୍କ ପାଖକୁ ଯାଇ ତାଙ୍କର ବିଶ୍ୱାସ ଜନ୍ମାଇ କପଟରେ କହିବି—ଆପଣଙ୍କ ଭାଇ ଗତରାତିରେ ଦେଖିଲେ ଯେ ଜଣେ ନାରୀ ତାଙ୍କୁ ଦେଖାଦେଇ କୁଆଡ଼େ ଉଭେଇଗଲା । ସେତିକବେଳୁ ଆପଣଙ୍କ ଭାଇ ଅସ୍ଥିର ହୋଇ କେବଳ ତାର ରୂପଶୋଭା ଚିନ୍ତା କରୁଅଛନ୍ତି ଓ ତାକୁ ନଦେଖିବା ପର୍ଯ୍ୟନ୍ତ ଅନ୍ନଜଳ ଗ୍ରହଣ କରିବେ ନାହିଁ ବୋଲି ସ୍ଥିର କରିଛନ୍ତି । ସେ ମୋତେ ସେହି ନାରୀର ନାମ ପଚାରିଲେ ମୁଁ ସୈରନ୍ଧ୍ରୀଙ୍କ ନାମ କହିଦେବି । ମହାରାଣୀ ନିଶ୍ଚୟ ଆପଣଙ୍କ ପାଇଁ ଚେଷ୍ଟା କରିବେ । ତାଙ୍କର ଆଦେଶ ଅମାନ୍ୟ କରିବା କାହାର ସାଧ ? ସୈରନ୍ଧ୍ରୀ ନିଶ୍ଚୟ ଆପଣଙ୍କୁ ଦେଖା ଦେବାକୁ ଆସିବ । ଆଉ ସେ ଆପଣଙ୍କ ମୁଖଦର୍ଶନ କଲାମାତ୍ରେ କନ୍ଦର୍ପର ବଶ ହୋଇ ପଡ଼ିବ । ଦର୍ଶନ ବିନା ପ୍ରେମର ପ୍ରକାଶ ହୁଏନାହିଁ । ପଦ୍ମିନୀ ସୂର୍ଯ୍ୟଙ୍କର ଦର୍ଶନ ନପାଇଲେ କଅଣ ବିକସିତ ହୁଏ ? ତେଣିକି ସେ ନିଜ ପତିଙ୍କୁ ଭୁଲିଇ ଆପଣଙ୍କ ପ୍ରେମରେ ମଜ୍ଜିଯିବ । ନାରୀ ଓ ଲତାର ପ୍ରୀତି ସମାନ ଧରଣର । ଲତା ଗୋଟିଏ ବୃକ୍ଷକୁ ଆଶ୍ରୟ କରିଥାଏ, କିନ୍ତୁ ପାଖରେ ଆଉ ଗୋଟିଏ ବୃକ୍ଷ ଦେଖିଲେ ତାକୁ ଆଲିଙ୍ଗନ କରିବାକୁ ନଇଁ ପଡ଼େ ।"

Digitized by srujanika@gmail.com

କୀଚକ କହିଲା, "ମୋ ପ୍ରାଣ ଯିବକ ପରି, ତୋର କଥାଗୁଡ଼ିକ ତାହାପକ୍ଷରେ ମେଘ ଗର୍ଜନ ପରି ହେଲା । ସେ ମେଘ ବର୍ଷା କରିବା ତୋ ହାତରେ । ତୋର ଫେରିବା ବାଟକୁ ମୁଁ ଗୁହିଁ ରହିଲି ।"

ଏହିପରି କୀଚକକୁ ଆଶ୍ୱାସନା ଦେଇ ଦାସୀ ରାଣୀ ସୁଦେଷ୍ଣାଙ୍କ ନିକଟକୁ ଗଲା । ତାଙ୍କ ପାଦରେ ପ୍ରଣାମ କରି କହିଲା, "ମହାଦେବି ! ମୋର ଗୋଟିଏ ପ୍ରାର୍ଥନା ଅଛି । କାଲି ରାତିରେ ଭାଇ ସ୍ୱପ୍ନ ଦେଖିଲେ ଯେ ଗୋଟିଏ ରମଣୀ ଦେଖା ଦେଇ ଉଭେଇଗଲା । ସେତିକବେଳୁ ସେ ଅନ୍ନଜଳ ତ୍ୟାଗ କରି ଅସ୍ଥିର ହୋଇଅଛନ୍ତି । ତାକୁ ନ ଦେଖିଲେ ସେ ଅନ୍ନଜଳ ଗ୍ରହଣ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଅଛନ୍ତି । ସେ ମୋତେ ଗୁପ୍ତରେ ଯଥାସାଧ୍ୟ ଚେଷ୍ଟା କରିବାକୁ କହିଅଛନ୍ତି । ପୁଅକଥା ମାଆ ଜାଣେ । ସେହିପରି ଭାଇକଥା ଭଉଣୀ ଜାଣିପାରେ । ଭାଇର ସୁଖ ଦୁଃଖ ଭଉଣୀଛଡ଼ା ଆଉ କିଏ ବୁଝିପାରିବ ? ନଈ ଶୁଖିଗଲେ ପର୍ବତର ଉଦର ଜଳେ ଉଠେ । ପୁଣି ନଈରେ ଜଳ ପୂରି ଆସିଲେ ପର୍ବତର ମନରେ ଶାନ୍ତି ଆସେ । ନଈ ଫୁଲି ଉଠି କୂଳକୁ ମାଡ଼ିଯାଏ । ନଈକୂଳର ଗଛମାନେ ନଈର ଭଲମନ୍ଦ କିଛି ଜାଣନ୍ତି ନାହିଁ । ସେମାନେ ନୀରବ ହୋଇ ରହିଥାନ୍ତି । ଗଛର ପତ୍ରଫୁଲ ହସୁଥାନ୍ତି । ସେହିପରି କୀଚକଙ୍କର ସୁଖ ଦୁଃଖ ଆପଣଙ୍କ ଛଡ଼ା ଆଉ କିଏ ବୁଝିବ ? ମୁଁ ତାଙ୍କ ଦୁଃଖ ସହି ନପାରି ଆପଣଙ୍କୁ ଜଣାଇଲି ।"

ଏ ସମ୍ବାଦରେ ରାଣୀ ବିକଳ ହୋଇ ପଚାରିଲେ, "କେଉଁ ରମଣୀପାଇଁ ମୋ ଭାଇ ଏତେ ଅଧୀର ? ଜଗତରେ ଯେଉଁ ରାଜକନ୍ୟା ମୋ ଭାଇର ପାଣିଗ୍ରହଣ କରିବ, ସେ ନିଶ୍ଚୟ ଧନ୍ୟା; ଅତି ଅଳ୍ପ କାଳ ମଧ୍ୟରେ ତାର ଦୁଃଖ ଦୂର ହେବ । ଆଜି ରାଜଦୂତ ପଠାଇ ତାକୁ ଅଣାଇବି । ସେ କିଏ, କେଉଁଠାରେ ଅଛି କହ ।"

Digitized by srujanika@gmail.com

ଦାସୀ ସୁଯୋଗ ପାଇ କହିଲା, "ମହାଦେବ ! ସେ ଅତି ନିକଟରେ ଅଛି । ଆପଣଙ୍କ ଅନ୍ନରେ ପ୍ରତିପାଳିତ ହୋଇ ସେ ରାଜପୁରମଧ୍ୟରେ ରହିଅଛି । ତାହାକୁ ଲୋକେ ସୈରନ୍ଧ୍ରୀ ବୋଲି କହନ୍ତି । ଆପଣଙ୍କ ଭାଇ ତାକୁହିଁ ସ୍ୱପ୍ନରେ ଦେଖିଅଛନ୍ତି ।"

ଏହା ଶୁଣିଲା ମାତ୍ରେ ରାଣୀ ସୁଦେଷ୍ଣା କାନରେ ହାତ ଦେଇ କହିଲେ, "ଏ ବଡ଼ କଷ୍ଟକର ବ୍ୟାପାର । ସେ କଥା ଛାଡ଼ ଅନ୍ୟ ଉପାୟ ଥିଲେ କହ ।" ତହୁଁ ଦାସୀ କହିଲା, "ସେ ଯାହାକୁ ସ୍ୱପ୍ନରେ ଦେଖିଥିଲେ ଥରେ ତାକୁ ଚକ୍ଷୁରେ ଦେଖିବାକୁ ଇଚ୍ଛା କରିଅଛନ୍ତି । ତାକୁ ଦେଖିଲେ ତାଙ୍କର ମନ ସନ୍ତୋଷ ଲାଭ କରିବ । ସେ ତ ତାର ଶରୀର ସ୍ପର୍ଶ କରିବେ ନାହିଁ ।"

ରାଣୀ କହିଲେ, "ଆଚ୍ଛା, ତାହାହିଁ ହେବ । କିନ୍ତୁ ଏଥିରୁ ଅନ୍ୟଥା ହେଲେ ତୋର ପ୍ରାଣ ରଖିବି ନାହିଁ । ତାର ପାତିବ୍ରତ୍ୟର ମହିମା କମ ନୁହେଁ; ତା ପାଖରେ କାହାର ବଡ଼ପଣ ରହିବ ନାହିଁ ।" ଏହା ଶୁଣି ଦାସୀ ମନେ ମନେ ଭାବିଲା— ଯାହାର ପାଞ୍ଚୋଟି ପତି, ସେ ପୁଣି କପରି ସତୀ ହେଲା ? ଏ ତ ଆଉ ଦ୍ରୌପଦୀ ନୁହେ ଯେ ପଞ୍ଚପାଣ୍ଡବ ଆସି ତାକୁ ରକ୍ଷା କରିବେ ? ତାର ପଞ୍ଚ ସ୍ୱାମୀ ଥିଲେ ହେଁ ମୋର ଭୟର କାରଣ ନାହିଁ । କୀଚକ ବୀର ପୁରୁଷ, ପୁଣି ରାଣୀଙ୍କର ଭାଇ । ତାଙ୍କ ମନ ସନ୍ତୁଷ୍ଟ କରି ଯଥେଷ୍ଟ ଧନ ପାଇବି ଓ ଚିରକାଳ ତାଙ୍କ ଆଦର ପାଇ ସୁଖରେ ରହିବି । ସନ୍ଧ୍ୟା ରାତି ଓ ଚନ୍ଦ୍ରର ମିଳନ କରାଇ ଉଜ୍ଜ୍ୱଳ ରଙ୍ଗ ପୁରସ୍କାର ସ୍ୱରୂପ ପାଇଥାଏ । ମୁଁ ସେହିପରି କୀଚକ ଓ ସୈରନ୍ଧ୍ରୀର ମିଳନ କରାଇ ପୁରସ୍କାର ପାଇବି । ତେଣିକି କୀଚକର ପରିଣାମ ଯାହା ହେବାର ହେଉଥାଉ । ରାତି ସହିତ ଚନ୍ଦ୍ରର

Digitized by srujanika@gmail.com

ମିଳନ ପରେ ଯଦି ରାହୁ ଚନ୍ଦ୍ରକୁ ଗ୍ରାସ କରେ, ସେଥିପାଇଁ କଅଣ ସନ୍ଧ୍ୟାର ଦୋଷ ହୁଏ ?

ଦାସୀ ନୀରବ ରହିବାର ଦେଖି ରାଣୀ ପଚାରିଲେ, "ତୁନି ହୋଇ ରହିଲୁ କାହିଁକି ? ଏଥିରେ କିଛି କପଟ ଅଛି କି ? କୌଣସି ପାପ ଅଭିଳାଷ ଥିଲେ, ସ୍ପଷ୍ଟ କରି କହ । ଜାଣିଥାଅ, ପାପ କଲେ ପରମାୟୁ ହାନି ହୁଏ । ଚନ୍ଦ୍ର ରଜନୀସଙ୍ଗେ ବିଳାସ କରେ; ମାତ୍ର ଉଷା ଆଗରେ ପଡ଼ିଗଲା ମାତ୍ରେ ସେ ନାଗପାଶ ଆଗରେ ମୃତାପରି ହୋଇ ରହେ । ପ୍ରଭାତୀ ତାରା ଉଷା ସହିତ ଚନ୍ଦ୍ରର ମିଳନ କରାଇବାକୁ ଯାଇ ଅଳ୍ପ କ୍ଷଣ ମଧ୍ୟରେ ବିନଷ୍ଟ ହୋଇଯାଏ ।"

ଏହି କଥା ଶୁଣି ଦାସୀ ଚମକି ପଡ଼ିଲା । ସେ ଭାବିଲା- ରାଣୀ ତାର ମନର ଅଭିପ୍ରାୟ ଜାଣିପାରିଲେ କି ? ତଥାପି ସାହସ ବାନ୍ଧି ସେ କହିଲା, "ନା, ନା, ଏଥିରେ କିଛି କପଟ ନାହିଁ । ଆପଣଙ୍କ ଭାଇଙ୍କର କଅଣ ଧର୍ମଜ୍ଞାନ ନାହିଁ ? କେବଳ ସ୍ୱପ୍ନରେ ଯାହାକୁ ଦେଖି ଆଶା ମେଣ୍ଟି ନାହିଁ, ତାକୁ ସ୍ୱଚକ୍ଷୁରେ ଦେଖିବାକୁ ଇଚ୍ଛା କରିଛନ୍ତି । ବିଧାତା ସୌନ୍ଦର୍ଯ୍ୟ କାହିଁକି ସୃଷ୍ଟି କରି ଅଛନ୍ତି ? ଚକ୍ଷୁର ପବିତ୍ରତା ସାଧନ ପାଇଁ ତ !"

ରାଣୀ କହିଲେ, "ତୁ ଯାଇ କୀଚକକୁ କହ ଯେ ମୁଁ ସୈରିନ୍ଧ୍ରୀ ହାତରେ କିଛି ପାନୀୟ ଦେଇ ତାହା ନିକଟକୁ ପଠାଇ ଦେବି । ସେହି ସମୟରେ ସେ ସୈରିନ୍ଧ୍ରୀକୁ ଦେଖି ପାରିବ ।"

ଦାସୀ ରାଣୀଙ୍କଠାରୁ ବିଦାୟ ନେଇ ଶୀଘ୍ର ଏହି ସମ୍ବାଦ କୀଚକକୁ ଜଣାଇ କହିଲା, "ଆପଣଙ୍କର ମହତ୍ତ୍ୱ ରହିଲା । ଏବେ ସୈରିନ୍ଧ୍ରୀର ଗୁମାନ ଭାଙ୍ଗିଗଲା । ସେ ପାନୀୟ ନେଇ ଆପଣଙ୍କ ସମ୍ମୁଖକୁ ଆସିବ । ସେ ଆସି ଥରେ ଶ୍ରୀମୁଖଙ୍କ ମୁଖାରବିନ୍ଦ

Digitized by srujanika@gmail.com

ଦେଖିଲେ, ଶ୍ରୀମୁଖରୁ ପଦେ ଗୃଢ଼ବାକ୍ୟ ଶୁଣିଲେ କାମାର୍ତ୍ତି ନ ହୋଇ ରହି ପାରିବ କି ?"

ଏହା ଶୁଣି କୀଚକ ଦାସୀର ବୁଦ୍ଧିର ପ୍ରଶଂସା କରି କହିଲା, "ସେ ଲାବଣ୍ୟମୟୀ ସୈରିନ୍ଧ୍ରୀ ସତେ ଯେପରି କି ମର୍ତ୍ତ୍ୟପୁରର ବିଜୁଳି । ଥରେ ଆସି ସେ ମୋର ନେତ୍ରରେ ତାର ସୌନ୍ଦର୍ଯ୍ୟସୁଧା ବୃଷ୍ଟି କରୁ । ତାହାହେଲେ ମୋର ସବୁ ସନ୍ତାପ ଦୂର ହୋଇଯିବ ଶାନ୍ତିର ସୁଗନ୍ଧ ବାୟୁ ପ୍ରବାହିତ ହେବ ।"

କୀଚକ ସ୍ନାନ ସାରି ଉତ୍ତମ ବସ୍ତ୍ର ପରିଧାନ ପୂର୍ବକ ପୁରକୁ ସଜ୍ଜିତ କରି ଉଚ୍ଚ ଭବନରେ ସ୍ୱର୍ଣ୍ଣ ଆସନରେ ବସି ରହିଲା ।

ସୈରିନ୍ଧ୍ରୀ ଆସିଲେ ତାଙ୍କ ଅଙ୍ଗରେ ବୋଳିବ ବୋଲି ସେ ଚନ୍ଦନ କର୍ପୂର ଗୋଳି ରଖିଲା । ତାର ଶରୀର ସ୍ୱର୍ଣ୍ଣ ଆସନ ଉପରେ ଥାଏ, ମାତ୍ର ତାର ମନ ସୈରିନ୍ଧ୍ରୀଙ୍କ ପାଦଶବ୍ଦ ଶୁଣିବାକୁ ବ୍ୟାକୁଳ ହେଉଥାଏ । ସତେ ଅବା ଚକ୍ରବାକ ପ୍ରାତଃକାଳରେ ପଦ୍ମବନରେ ବସି ପ୍ରିୟାର ଆଗମନ ପଥକୁ ଚାହିଁ ରହିଛି ।

ଏଣେ ବିରାଟରାଣୀ ଦ୍ରୌପଦୀଙ୍କୁ ଡାକି ମଧୁର ସ୍ୱରରେ କହିଲେ, "ହେ ସୁଶୀଳେ, ଏ ମଧୁପୂର୍ଣ୍ଣ ପାତ୍ରଟି ନେଇ ଶୀଘ୍ର ମୋର ଭାଇକୁ ଦେଇଆସ ।" ସୈରିନ୍ଧ୍ରୀ କହିଲେ, "ଆପଣଙ୍କ ଭାଇଙ୍କ ଘରକୁ ଯିବା ପାଇଁ ମୋର ଭୟ ହେଉଅଛି । ଦୟାକରି ଆପଣଙ୍କର ଆଦେଶ ପ୍ରତ୍ୟାହାର କରନ୍ତୁ ।" ରାଣୀ କହିଲେ, "ଏଥିରେ ଭୟର କି କାରଣ ଅଛି ? ମନରେ ଆଶଙ୍କା କରିବା ଏକବାରେ ଅନୁଚିତ । ମୋର ଭାଇଙ୍କ ଘର ବଣ ନୁହେ କି ସମୁଦ୍ର ନୁହେଁ ଯେ ସିଂହ କି କୁମ୍ଭୀର ଧରି ପକାଇବ ?"

Digitized by srujanika@gmail.com

ଦ୍ରୌପଦୀ ଉତ୍ତର କଲେ, "ଦେବ, ସେଠାରେ କୃଷ୍ଣୀର କମ୍ପିଂହ ନାହାନ୍ତି, ଏକଥା ସତ୍ୟ; ମାତ୍ର ସେଠାରେ କାମଦେବ ପଞ୍ଚଶର ଧରି ବିରାଜମାନ । ସେଥିପାଇଁ ମୋର ଭୟ ।"

ରାଣୀ ଆଶ୍ୱାସନା ଦେଇ କହିଲେ, "ସଖୀ, ଭୟର ହେତୁ ନାହିଁ । ମୁଁ ଯେପରି କୀଚକର ଭଉଣୀ, ତୁମ୍ଭେ ମଧ୍ୟ ସେହିପରି । ବିଶେଷତଃ ଯେ ଧର୍ମଶୈଳ ଉପରେ ବାସ କରିଥାଏ, ପାପସ୍ରୋତ ତାର କଅଣ କରିପାରିବ ? ଧର୍ମୋ ରକ୍ଷତି ଧାର୍ମିକଂ । ଧାର୍ମିକକୁ ଧର୍ମ ରକ୍ଷା କରେ । ଧାର୍ମିକକୁ ରକ୍ଷା କରିବା ପାଇଁ ଭଗବାନ ଚକ୍ର ବାହୁ ବିସ୍ତାର କରି ରହିଥାନ୍ତି । ଜୀମୂତପ୍ରିୟା ସୁନ୍ଦରୀ ବିଦ୍ୟୁତକୁ ପାଇବା ଲୋଭରେ ଅନ୍ଧକାର ମେଘ ପଛରେ ଧାଇଁଥାଏ, କିନ୍ତୁ ଅନ୍ଧକାର କି କେବେ ବିଦ୍ୟୁତର ଧର୍ମ ନାଶ କରିପାରେ ? ମୋର ଅନୁରୋଧ ରକ୍ଷା କରି ମଧୁପାତ୍ର ନେଇ ଯାଅ ।"

ସୈରନ୍ଧ୍ରୀ ମଧୁକଳସ ଧରି କୁଣ୍ଠିତ ଚିତ୍ତରେ ଧୀର ପଦରେ ଚାଲିବାକୁ ଲାଗିଲେ । ମାତ୍ର ତାଙ୍କର ପାଦ ଚଳୁ ନ ଥାଏ, ହୃଦୟ ଥରି ଉଠୁଥାଏ । ସେ ଚିନ୍ତା କଲେ, "ସକାଳୁ ମୋ ମନରେ ଆଶଙ୍କା ଜନ୍ମିଅଛି । ଦୁଷ୍ଟ କୀଚକ ତାର ନୀଚ କାମନା ଫଳବତୀ କରିବା ପାଇଁ କୌଶଳ ସୃଷ୍ଟି କରିଛି । ଭାଇର ସ୍ନେହରେ ପଡ଼ି ରାଣୀ ମଧ୍ୟ ତାର ମାୟାରେ ଅନ୍ଧ ହୋଇଅଛନ୍ତି । ତାଙ୍କ ଦୃଷ୍ଟିରେ କୀଚକ ବିଶୁଦ୍ଧ ସ୍ୱଭାବ, ସେ ଯେ ଇତର କାଟଠାରୁ ହୀନ ତାହା ସେ ଜାଣନ୍ତି ନାହିଁ ।"

ଏହିପରି ଚିନ୍ତାକରି ସେ ଊର୍ଦ୍ଧ୍ୱକୁ ଅନାଇ କହିଲେ, "ହେ ଧର୍ମ ଦେବତା, ତୁମ୍ଭେହିଁ ଅବଳାର ବଳ । ଯାହାଙ୍କର ଅନ୍ନ-ବସ୍ତ୍ରରେ ମୁଁ ପାଳିତ ତାଙ୍କର, ଆଦେଶ ପାଳନ କରିବାକୁ ମୋ ହୃଦୟରେ ବଳ ଦିଅ । କାଳେ ସେ ଦୁଷ୍ଟ ମୋର ସତୀତ୍ୱ-ରତ୍ନ ହରଣ

Digitized by srujanika@gmail.com

କରିବ ବୋଲି ମୋର ଆଶଙ୍କା ଜନ୍ମିଅଛି । ତୁମ୍ଭେ ପ୍ରହରୀ ପରି ତାହାକୁ ରକ୍ଷାକର । ମୋର ଭଗବାନ୍ ସହାୟ ଅଛନ୍ତି ।”

ସେ ଶ୍ରୀହରିଙ୍କୁ ସ୍ମରଣ କରି ଚାଲିବାକୁ ଆରମ୍ଭ କଲେ । ସେହି ଗଜଗମନ ଦେଖିଲେ ପଣ୍ଡିତମାନଙ୍କର ମନ ମଧ୍ୟ ବିଚଳିତ ହୁଅନ୍ତା । ପ୍ରାସାଦର ନିମ୍ନ ଦେଶରେ ସୈରିନ୍ଧ୍ରୀ ଯିବାବେଳେ ମନେ ହେଲା, ଯେପରି ଅବା ପାର୍ବତୀ ପର୍ବତ ପଥରେ ଗତି କରୁଅଛନ୍ତି । ମୋହିନୀ ହସ୍ତରେ ଅମୃତ ପାତ୍ର ଧରିଲା ପରି ସେ ମଧୁ ପାତ୍ରଟି ଧରିଥିଲେ । ମନେ ହେଲା, ସ୍ୱୟଂ ସରସ୍ୱତୀ ଭକ୍ତର ବଶବର୍ତ୍ତିନୀ ହୋଇ କବିତାରସକୁ ହସ୍ତରେ ଧରି ମର୍ତ୍ତ୍ୟରେ ଚାଲୁଅଛନ୍ତି କି ? ଏହା ପରେ ଉପବନ ପଥ ପଡ଼ିଲା । ତାହାକୁ ଶୋଭିତ କରି ସୈରିନ୍ଧ୍ରୀ ଅଗ୍ରସର ହେଲେ । ଦୂରରୁ ଲୋକେ ମନେ କରିଥାନ୍ତେ ଯେ ରାଜହଂସୀ ପଦ୍ମବନ ମଧ୍ୟରେ ଗମନ କରୁଅଛି । ଆକାଶରେ ମେଘଖଣ୍ଡମାନ ଭାସୁଥିବାବେଳେ ତାରା ଯେପରି କିଛିକ୍ଷଣ ପାଇଁ ଦେଖା ଦେଇ ଲୁଚି ଯାଏ, ପୁଣି କ୍ଷଣକାଳ ପରେ ଦେଖାଯାଏ, ସେହିପରି ସୈରିନ୍ଧ୍ରୀ ବୃକ୍ଷ ଅନ୍ତରାଳରେ ବେଳେବେଳେ ଦେଖା-ଯାଉଥାନ୍ତି, ପୁଣି କେତେବେଳେ ଲୁଚି ଯାଉଥାନ୍ତି । ପରିଶେଷରେ ସେ କୀଚକ ଗୃହର ଦ୍ୱାର ଦେଶରେ ଉପସ୍ଥିତ ହେଲେ । ତାଙ୍କ ଦ୍ୱାରି ଦୋଳାୟିମାନ ଚନ୍ଦ୍ରିକା ପରି ସେ ଧୀର ପଦରେ ସୋପାନ-ମାଳା ଅତିକ୍ରମ କରି ପୁରପ୍ରାଙ୍ଗଣରେ ପଦାର୍ପଣ କଲେ । ଏହା ସଙ୍ଗେ ସଙ୍ଗେ କୀଚକର ବିପଦ ଉପସ୍ଥିତ ହେଲା । କୀଚକ-ବନକୁ ଧ୍ୱଂସ କରିବା ପାଇଁ ସୈରିନ୍ଧ୍ରୀ ଦାବାଗ୍ନି ସଦୃଶ ହେଲେ । ପୁରଲକ୍ଷ୍ମୀ ମୃଦୁହାସ୍ୟ କରି ଦ୍ରୌପଦୀଙ୍କୁ ଅଭ୍ୟର୍ଥନା କଲେ । ଗଙ୍ଗା ଓ ଯମୁନା ପରସ୍ପରର ଶୋଭା ବର୍ଦ୍ଧନ କଲା ପରି ଦ୍ରୌପଦୀ ଓ

Digitized by srujanika@gmail.com

ପୁରଲକ୍ଷ୍ମୀ ପରସ୍ପରର ଶୋଭାବର୍ଦ୍ଧନ କରିବାକୁ ଲାଗିଲେ । ଏହି ସମୟରେ ଜଣେ ଦାସୀକୁ ଦେଖି ଦ୍ରୌପଦୀ ତାହାକୁ ପଚାରିଲେ, "କୀଚକ କେଉଁଠାରେ ?" ତହୁଁ ସେ କୀଚକ ବସିଥିବା କକ୍ଷଟି ଦେଖାଇଦେଲା ।

ଦ୍ରୌପଦୀ ମଧୁପାତ୍ରଟିକୁ ତଳେ ରଖିଦେଇ ନତମୁଖରେ ଫେରିଯିବାକୁ ବାହାରିଲେ । ଏହାଙ୍କୁ ଦେଖି କୀଚକର ମନ ଅସ୍ଥିର ହୋଇ ଉଠିଲା । ସେ କହିଲା, "ପ୍ରିୟେ, ଦୟାକରି ମୋତେ ଦାସ ପରି କିଣି ରଖ ।" ଏହା ଶୁଣିଲା ମାତ୍ରେ ଦ୍ରୌପଦୀ ପଣତ କାନକୁ ଧରି ବେଗରେ ଚାଲିବାକୁ ଲାଗିଲେ । କୀଚକ ଭାବିଥିଲା ଯେ ସେ ସୈରନ୍ଧ୍ରୀର ମୁଖ ଦେଖି ଦୁଃଖ ଦୂର କରିବ । ମାତ୍ର ସେ ମୁଖ ବଦୁ୍ୟତ୍ ପରି ନିମିଷକ ପାଇଁ ଦେଖାଦେଇ ଉଭେଇଗଲା । ତାର ଆଶା-ମସ୍ତକରେ ବଜ୍ରପାତ ହେଲା ପରି କୀଚକ ଅନୁଭବ କଲା । ସେ ଦ୍ରୌପଦୀଙ୍କ ପଛେ ପଛେ ଧାଇଁବାକୁ ଲାଗିଲା । ଦ୍ରୌପଦୀ ମଧ ବ୍ୟାଘ୍ର ଦର୍ଶନରେ ମୃଗୀ ପଳାଇଲା ପରି ଦ୍ରୁତ ପଦରେ ଧାଇଁଲେ । ତାଙ୍କର କେଶପାଶ ପୃଷ୍ଠ ଦେଶରେ ଲୋଟି ପଡ଼ିଲା । ଦ୍ରୁତ ଗମନ ହେତୁ ତାଙ୍କର କଟି ଓ ବାହୁ ହଯ୍ୟ ହଲି ଯାଉଥାଏ । ପଣତ କାନି ପଛକୁ ଉଡ଼ୁଥାଏ । ସେ ଓଷ୍ଠକୁ କାମୁଡ଼ି ରୁଦ୍ଧଶ୍ୱାସ ହୋଇ ଧାଇଁଥାନ୍ତି । ଭୂମିରେ ପାଦର ଗତି ବେଳେ ସ୍ଥଳକମଳ ଫୁଟିଗଲା ପରି ବୋଧ ହେଉଥାଏ । କେତେବେଳେ ବୃକ୍ଷତଳେ, କେତେବେଳେ ଅବା ମୁକ୍ତ ସ୍ଥାନରେ ସେ ଧାଇଁଥାନ୍ତି । କୌଣସି କୌଣସି ସମୟରେ ତାଙ୍କ ପଦ ନବ ପଲ୍ଲବ ସ୍ପର୍ଶ କରି ଯାଉଥାଏ । କୀଚକ ତାଙ୍କ ପଛେ ପଛେ ଦଉଡ଼ୁଥାଏ । ଯେପରି ଅବା ଦ୍ରୌପଦୀ ମାୟା ରଜ୍ଜୁରେ ତାର ଗଳାକୁ ବାନ୍ଧି ଟାଣି ନେଉଥିଲେ । ଏହିପରି ଉଦ୍ୟାନ ଅତିକ୍ରମ କଲାବେଳକୁ

Digitized by srujanika@gmail.com

ଦ୍ରୌପଦୀଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ତାଙ୍କର ଗତି ମନ୍ଥର ହୋଇ ଆସିଲା । ପାଦର ବଳ କମି ଆସିଲା । କ୍ରମେ କୀଚକ ତାଙ୍କର ଏତେ ନିକଟବର୍ତ୍ତୀ ହୋଇ ପଡ଼ିଲା ଯେ ତାଙ୍କ ବସନାଞ୍ଚଳ ବାରମ୍ବାର ତା'ର ହସ୍ତକୁ ସ୍ପର୍ଶ କଲା ପରି ହେଲା ।

କୀଚକର ଦୃଷ୍ଟି କେବଳ ଦ୍ରୌପଦୀଙ୍କ ଅଙ୍ଗ ଉପରେ ନିବଦ୍ଧ ଥିଲା; ତେଣୁ ସେ ଆଉ କିଛି ଦେଖି ପାରୁ ନ ଥିଲା । ହଠାତ୍ ତାହାର ମସ୍ତକ ଗୋଟିଏ ତରୁ ଶାଖାଦ୍ୱାରା ଆଘାତପ୍ରାପ୍ତ ହେବାରୁ ସେ ସେହିଠାରେ ବସି ପଡ଼ିଲା । କିଛି ସମୟ ପର୍ଯ୍ୟନ୍ତ ମୁଣ୍ଡକୁ ଆଉଁଷି ସେ ରାଗରେ ସେହି ଶାଖାଟିକୁ ଟାଣି ଭାଙ୍ଗି ପକାଇଲା । ଏହି ଅବସରରେ ଦ୍ରୌପଦୀ ନିଜ ପ୍ରକୋଷ୍ଠକୁ ଆସି ଅବସନ୍ନ ଭାବରେ ବସି ପଡ଼ିଲେ । ତାହାଙ୍କ ଶରୀର ଘର୍ମରେ ଜର୍ଜର ହୋଇ ଯାଇଥିଲା । ତାହାକୁ ପଣନ୍ତରେ ମୋଛି ସୁସ୍ଥ ହେଲେ । କୀଚକ ହସ୍ତରୁ ଉଦ୍ଧାର ପାଇଥିବାରୁ ସେ ଈଶ୍ୱରଙ୍କୁ ଧନ୍ୟବାଦ ଦେଇ କହିଲେ, "ହେ ପ୍ରଭୋ, ବାସ୍ତବରେ ତୁମ୍ଭେ ଆର୍ତ୍ତତ୍ରାଣ । ତୁମ୍ଭେ ଏକାଧାରରେ କୃପା ଓ କୃପାଣ ଧାରଣ କରିଅଛ । ତୁମ୍ଭର କୃପାରେ ମୋର ଦୁଃଖ ଦୂର କର ଏବଂ କୃପାଣ ଦ୍ୱାରା ଦୁଷ୍ଟ କୀଚକର ଗର୍ବକୁ ହରଣ କର ।"

---

Digitized by srujanika@gmail.com

# ପଞ୍ଚମ ଅଧ୍ୟାୟ

ପର୍ବତ ଶୃଙ୍ଗରେ ସିଂହ ଗର୍ଜିଲା ପରି ପ୍ରାସାଦ ଉପରେ ବସି କୀଚକ ଗର୍ଜନ କରି କହିଲା, "ଏ ଜଗତରେ ମୋ ପରି କିଏ ବୀର ଅଛି ? ମୋର ବାହୁବଳରେ ପୃଥିବୀ କମ୍ପି ଯାଏ । ଶତ୍ରୁମାନେ ମୋ ପ୍ରତାପରେ ତ୍ରସ୍ତ । ଜଗତରେ ମୋର ଯଶୋଗାନ ହେଉଛି । ମୋର ଧନୁର ଟଙ୍କାର ଧ୍ୱନିରେ ଯମପୁର ଚମକି ପଡ଼େ । ମୋର ବଳ ହିଁ ବିରାଟ ରାଜାଙ୍କର ବଳ । ମୋତେ ଛାର ସୈରିନ୍ଧ୍ରୀ ଅପମାନ ଦେଲା । ବଡ଼ ବଡ଼ ରଥୀମାନେ ମୋତେ ଭୟ କରି ପୃଷ୍ଠଭଙ୍ଗ ଦିଅନ୍ତି । ଛାର ଦାସୀଟାଏ ମୋତେ ଅପମାନ କରି ଚାଲି ଆସିଲା । ତାକୁ ନିଶ୍ଚୟ ମୋର ଦାସୀ କରି ଆଣି ମୋର ପାଦସେବା କରାଇବି । କେହି ତାକୁ ରକ୍ଷାକରି ପାରିବେ ନାହିଁ । ମୁଁ ନିଶ୍ଚୟ ତାକୁ ମୋର କାମ ଯୁଦ୍ଧରେ ରଥରୂପେ ବ୍ୟବହାର କରିବି । ଏହା ମୋର ପ୍ରତିଜ୍ଞା । ଏହା କରି ନ ପାରିଲେ ଜୀବନ ରଖିବି ନାହିଁ । ଯଦି ପାଞ୍ଚଜଣ ଗନ୍ଧର୍ବ ତାର ପକ୍ଷ ଥାଆନ୍ତି, ତେବେ ସେମାନେ ମୋର ଶରରେ ମୃଗପରି ନିହତ ହେବେ ।"

ଏହି ସମ୍ବାଦ ଗୋପନରେ ଜଣକଠାରୁ ଅନ୍ୟଜଣଙ୍କ ନିକଟକୁ ଯାଇ ସମସ୍ତ ନଗରରେ ବ୍ୟାପିଗଲା । ସୈରିନ୍ଧ୍ରୀ ଓ କୀଚକ ମଧ୍ୟରେ ଯାହାଯାହା ଘଟିଥିଲା, ସର୍ବତ୍ର ତାହାର ଆଲୋଚନା ଚାଲିଲା । କିଏ କହିଲା, 'କୀଚକର ଅଭିପ୍ରାୟ ମନ୍ଦ ।' କିଏ କହିଲା, 'ବଡ଼ଲୋକଙ୍କର ସ୍ୱଭାବ ଏହିପରି ହୋଇଥାଏ ।'

କୀଚକ ପ୍ରାସାଦରେ ଯାହା ଘଟିଥିଲା, ଘୋଡ଼ାଗୁଠରେ ମଧ୍ୟ ତାହାର ଆଲୋଚନା ହେଲା । ଚାକରିଆମାନେ କାଠବୋଝ ଧରି ବଣରୁ ଆସିଲା ବେଳେ ସେହି ବିଷୟରେ ଗଳ୍ପ କଲେ । 'ଦ୍ରୌପଦୀ

Digitized by srujanika@gmail.com

କୀଚକର ପ୍ରତିଜ୍ଞା ବିଷୟ ଶୁଣିପାରି ମନେକଲେ, "ଏବେ ବିପତ୍ତି ଉପରେ ବିପତ୍ତି ପଡ଼ିଲା । ଏବେ କି ଉପାୟରେ ଏଥିରୁ ଉଦ୍ଧାର ପାଇବି । ରାଣୀ ସୁଦେଷ୍ଣା କୀଚକକୁ ନିବର୍ତ୍ତାଇ ପାରିବେ ନାହିଁ । ସହଜରେ ବିରାଟ ରାଜା ନୀରବ ହୋଇ ରହିବେ । ଯୁଧିଷ୍ଠିର ଏହା ଜାଣିଲେ କେବଳ ମନରେ ଦୁଃଖ କରିବେ । ଅର୍ଜୁନ ଏହା ଜାଣିଲେ ନିଶ୍ଚୟ କୀଚକ ସଙ୍ଗେ ଯୁଦ୍ଧ କରିବାକୁ ବାହାରି ପଡ଼ିବେ । ତେବେ ଆମ୍ଭମାନଙ୍କର ଛଦ୍ମବେଶ ଧରା ପଡ଼ିଯିବ । ନକୁଳ ଓ ସହଦେବଙ୍କ ଦ୍ୱାରା ଏ କାର୍ଯ୍ୟ ହୋଇ ନ ପାରେ । ସାମାନ୍ୟ ଜଳକଣା କି ଦାବାନଳକୁ ନିବାରଣ କରିପାରେ ? ଯାଏଁ ଭୀମଙ୍କୁ ସମସ୍ତ ବିଷୟ ଜଣାଏଁ । ସେ ଅବଶ୍ୟ କିଛି ପ୍ରତିକାର କରିପାରିବେ । ତଥାପି ସେ ଜ୍ୟେଷ୍ଠ ଭ୍ରାତାଙ୍କର ଆଦେଶ ଲୋଡ଼ିବେ । ତାଙ୍କର ଆଦେଶ ବିନା ସେ କିଛି କରିବେ ନାହିଁ । ତେଣୁ ଆଗେ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ଜଣାଏଁ । ତାଙ୍କର ଅନୁମତି ନେଇ ଭୀମଙ୍କୁ ଜଣାଇବି । ଯୁଧିଷ୍ଠିର ବିରାଟ ରାଜାଙ୍କ ନିକଟରେ ଥିବା ସମୟରେ ଜଣାଇବା ଦ୍ୱାରା ଏକ କାଳରେ ଦୁଇ କାର୍ଯ୍ୟ ସାଧିତ ହେବ ।"

ଏହିପରି ବିଚାର କରି ଦ୍ରୌପଦୀ ରାଜାଙ୍କ କକ୍ଷକୁ ଗଲେ । ସେତେବେଳେ ଯୁଧିଷ୍ଠିର ବିରାଟ ରାଜାଙ୍କ ସଙ୍ଗେ ଅକ୍ଷ କ୍ରୀଡ଼ାରେ ରତ ଥିଲେ । ଦ୍ରୌପଦୀ ଯୁଧିଷ୍ଠିରଙ୍କୁ ଲକ୍ଷ୍ୟକରି ରାଜାଙ୍କ ଆଗରେ କହିଲେ, "ହେ ଧର୍ମାବତାର, ହେ ରାଜଶ୍ରେଷ୍ଠ, ଆଜି ଦାସୀ ତୁମ୍ଭଙ୍କର କ୍ଷମତାର ଆଶ୍ରୟ ଲୋଡ଼ୁଛି । କୀଚକ ହୃଦୟରେ ମନ୍ଦ ଅଭିଳାଷ ରଖି ଧର୍ମପଥ ଛାଡ଼ି ଅତ୍ୟାଚାର କରିବାକୁ ଆରମ୍ଭ କରିଛି । ରାଣୀଙ୍କ ଆଦେଶରେ ମୁଁ ମଧୁପାତ୍ର ନେଇ ତାହା ନିକଟରେ ରଖି ଆସୁଥିଲି । ଏହି ସମୟରେ ସେ ଅନୁଚିତ ଅନୁରୋଧ କଲା ।

Digitized by srujanika@gmail.com

ମୁଁ ତାହା ନ ଶୁଣି ବଳ ଆସିବାରୁ ସେ ମୋ ପଛରେ ଧାଇଁଲା । ମାତ୍ର ମୋତେ ଧରି ପାରିଲା ନାହିଁ । ଏବେ ସେ ପ୍ରତିଜ୍ଞା କରିଛି ଯେ ମୋତେ ବଳପୂର୍ବକ ତାର ପତ୍ନୀ କରି ତା ପଦ ତଳେ ଖଟାଇବ । ଦୁର୍ବଳର ବଳ ହେଉଛନ୍ତି ରାଜା । ମୋତେ ଏଥିରୁ ରକ୍ଷା କରି ରାଜଧର୍ମ ପାଳନ କରନ୍ତୁ । କୀଚକର ପରିଧାନ ଏଠିକରେ ସୀମାବଦ୍ଧ ରହୁ ।"

ବିରାଟରାଜ ସୈରିନ୍ଧ୍ରୀଙ୍କର ଏହି ଯୁକ୍ତି ଶୁଣି କହିଲେ, "କୀଚକର ପ୍ରତିଜ୍ଞା ଅତି କଠୋର । ତାର ଅଭିଳାଷ ପୂର୍ଣ ହେବା ଭାଗ୍ୟର କଥା । ସର୍ବଦା ଦୁଃଖରେ ରହିବାରେ କି ଲାଭ ?" ଧର୍ମପରାୟଣ କଙ୍କ (ଛଦ୍ମବେଶୀ ଯୁଧିଷ୍ଠିର) ଦ୍ରୌପଦୀଙ୍କୁ ଲକ୍ଷ୍ୟ କରି କହିଲେ, "ଏ ସ୍ଥଳରେ ଭୀମ ପରାକ୍ରମକ୍ଷମ କୀଚକର ଅଭିଳାଷର ଉପଯୁକ୍ତ କାର୍ଯ୍ୟ କରିପାରେ । ଏହାଛଡ଼ା ତୁମର ଅନ୍ୟ ପ୍ରତିକାର ନାହିଁ । ଅତଏବ ତୁମ୍ଭେ ଦ୍ୱିତୀୟ ସ୍ୱାମୀକ ଭଜ ।" (୧)

ଏହା ଶୁଣି ବିରାଟରାଜ କହିଲେ, "କଙ୍କ ଯାହା କହିଲେ, ତାହା ଯଥାର୍ଥ । କାଞ୍ଚନ ସଙ୍ଗେ ମଣିର ମିଳନ ହେଉ ।"

ଦ୍ରୌପଦୀ କଙ୍କଙ୍କର ବାକ୍ୟର ପ୍ରକୃତ ଅର୍ଥ ବୁଝିପାରି ଭାବିଲେ, "ଏବେ କୀଚକର ମୃତ୍ୟୁ ନିଶ୍ଚିତ । ଏକାନ୍ତଭାବେ ପୂର୍ବରେ

---

(୧) ଏହାର ଦୁଇଟି ଅର୍ଥ ଅଛି । ଏକ ଅର୍ଥରେ (ବିରାଟ ରାଜାଙ୍କ ପ୍ରତି) ଭୀଷଣ ପରାକ୍ରମ ପ୍ରଦର୍ଶନ ଦ୍ୱାରା କୀଚକର ସୈରିନ୍ଧ୍ରୀ-ଲାଭ ଅଭିଳାଷ ପୂରଣ ହୋଇପାରେ । ଏହାଛଡ଼ା ଅନ୍ୟ ଉପାୟ ନାହିଁ । ତେଣୁ ତୁମ୍ଭେ ତାକୁ ଅନ୍ୟ ଅର୍ଥରେ—(ଦ୍ରୌପଦୀଙ୍କ ପ୍ରତି) ଅନ୍ୟ ପତିରୂପେ ଗ୍ରହଣ କର ।

କୀଚକର ମନ୍ଦ ଅଭିଳାଷକୁ କେବଳ ଦ୍ୱିତୀୟ ପାଣ୍ଡବ ଭୀମ ବ୍ୟର୍ଥ କରିପାରନ୍ତି । ଅନ୍ୟ କେହି ପାରିବେ ନାହିଁ । ତେଣୁ ତୁମେ ଦ୍ୱିତୀୟ ପତି ଭୀମଙ୍କର ଆଶ୍ରୟ ନିଅ ।

Digitized by srujanika@gmail.com

ସ୍ୱୟଂ ଦୁଷ୍ଟ ବକଙ୍କୁ ବିନାଶ କରିଥିଲେ । ଏବେ ଶକଟଙ୍କୁ ବିନାଶ କରିବେ ।"

ମାଁଙ୍କ ସେ ନିଜର ମନୋଭାବ ଗୋପନ ରଖି ବିଷାଦର ଛଳନା କରି ନିଜ ପ୍ରକୋଷ୍ଠକୁ ଚାଲି ଆସିଲେ । ଯେତେବେଳକୁ ଶକଟଙ୍କର ଦୂତୀ ସୈରିନ୍ଧ୍ରୀଙ୍କୁ ଚାହିଁ ରହିଥିଲେ । ସେ ହସି ହସି କହିଲେ, "ହେ ସୁମୁଖୀ, ତୋ ରାଜା ବୀର ଶକଟ ମହା ଦୁଃଖରେ ଅଛନ୍ତି । ଏ ରାଜ୍ୟରେ ତାଙ୍କର ଅପ୍ରତିହତ ପ୍ରଭୁତ୍ୱ । ତାଙ୍କ ଗୃହରେ ରାଜଲକ୍ଷ୍ମୀ ବିରାଜମାନ । ରାଜକୁମାରୀମାନେ ତାଙ୍କର ପ୍ରୀତି ଲାଭ କରିବାକୁ ଅଧୀର । ଯାହାର ପ୍ରେୟସୀ ହେବାକୁ ତୋର କୁଣ୍ଠା କାହିଁକି ? ଆଜି ଶକଟ ମୋତେ ଯେଉଁ ଆଦେଶ ଦେଇଅଛନ୍ତି, ତାହା ସଂକ୍ଷେପରେ କହୁଅଛି ।

ତୋର ପ୍ରେମରେ ଏ ଯେଉଁ କାର୍ପଣ୍ୟ, ସେ ତୋର ଏକ ରୋଗ ପରି । ସେ ରୋଗ ଛଡ଼ାଇବା ପାଇଁ ଶକଟ ଆଜି ଉପଯୁକ୍ତ ଔଷଧ ପ୍ରୟୋଗ କରିବେ ।

ହେ ମୀନନେତ୍ରି, ଶରତର ଜଳର ଶୈତ୍ୟକୁ ଘୃଣା କରି ସ୍ଥଳକୁ ଡେଇଁ ପଡ଼ିଲେ ବଞ୍ଚିବ କି ?"

ସୈରିନ୍ଧ୍ରୀ ଏତିକି ଶୁଣିଲାକ୍ଷଣି କହିଲେ, "ଆଜି କିଛି କହିବା ଆବଶ୍ୟକ ନାହିଁ । ରକ୍ଷକ ଭକ୍ଷକ ହେଲେ ଆଜି କାହାକୁ କହିବି ? ଆଜି ରାତିଟି ମୋତେ ଅବସର ଦେ । କାଲି ମୋର ଉତ୍ତର ଦେବି । ଶବର ପଲ୍ଲୀରେ ବାସ କରୁଥିବାବେଳେ କେତେବେଳେ ଫଳ ମୂଳ, କେତେବେଳେ ଅବା ମାଂସ ଆହାର କରିବାକୁ ହେବ ।"

ଦାସୀ ଶକଟ ନିକଟକୁ ଫେରି ଯାଇ ଆଶ୍ୱାସନା ଦେଇ କହିଲା; "କାଲି ଆପଣଙ୍କର ମନୋବାଞ୍ଛା ପୂରଣ ହେବ । ଏବେ

Digitized by srujanika@gmail.com

ସୈରନ୍ଧ୍ରୀର ମନ ଆପଣଙ୍କ ଆଡ଼କୁ ଆକୃଷ୍ଟ ହେଲାଣି ।" ଏହା ଶୁଣି କୀଚକର ଆଶାତରୁ ପଲ୍ଲବିତ ହୋଇ ଉଠିଲା । ତାର ପ୍ରାଣ ଶୀତଳ ହେଲା ।

ବାହାନ୍ତି ଘଡ଼ି । ଆକାଶରେ ଚନ୍ଦ୍ର ଶୋଭା ପାଉଥିଲେ । ତାଙ୍କର ମନୋହର ଜ୍ୟୋତ୍ସ୍ନା ପ୍ରକୃତି ରାଜ୍ୟରେ କ୍ରୀଡ଼ା କରୁଥିଲା । ଚନ୍ଦ୍ର କିରଣର ଶୋଭା ଆକାଶ ମଣ୍ଡଳକୁ ବ୍ୟାପିଥିଲା । ସମୁଦ୍ର-ଠାରୁ ଆରମ୍ଭ କରି ବନରାଜି ଏହି ଚନ୍ଦ୍ର କିରଣରେ ମଣ୍ଡିତ ହୋଇଥିଲେ । ବୃକ୍ଷର ପତ୍ରଗୁଡ଼ିକ ସେହି କିରଣରେ ଚକ୍‌ଚକ୍ ହୋଇ ଧୀର ସମୀରରେ ମର୍ମର ଧ୍ୱନି କରୁଥିଲା । ବେଳେବେଳେ ଚକ୍ରବାକ ଚକ୍ରବାକୀଙ୍କର କରୁଣ ଧ୍ୱନି ଶୁଣା ଯାଉଥିଲା । ବେଳେ-ବେଳେ ଅବା ଝିଲ୍ଲୀକର ନୈଃଶବ୍ଦ୍ୟବ୍ୟଞ୍ଜକ ଧ୍ୱନି ଶୁଣା ଯାଉଥିଲା । ସ୍ଥାନେ ସ୍ଥାନେ ଟେଣ୍ଟେଇ ରାବ ଦେଇ ଆକାଶରେ ଉଡ଼ି ଯାଉଥାଏ । ଏ ସେ ଦୁଃଖର ସ୍ୱର କି ସୁଖର ସ୍ୱର ତାହା ଜଣା ପଡ଼ୁ ନ ଥାଏ । କେଉଁଠାରେ କଳନାଦିନୀ ନଦୀ ଗୀତ ଗାଇ ଗାଇ ତା ପ୍ରିୟ ସମୁଦ୍ର ଆଡ଼କୁ ଚାଲିଥାଏ । ତାର ଧ୍ୱନି ଶୁଣି ନଦୀକୂଳବର୍ତ୍ତୀ ଗୀତ ଗାଇ ଆନନ୍ଦ ପ୍ରକାଶ କରୁଥାଏ ।

ଏହି ସମୟରେ ସୌରବର୍ତ୍ତୀଶଗର ଶ୍ୟାମ ପାକଶାଳାର ପ୍ରାଙ୍ଗଣରେ ଚନ୍ଦ୍ର କିରଣରେ ଶୟନ କରିଥିଲେ । ତାଙ୍କର ଶରୀର ଚନ୍ଦନ ଚର୍ଚ୍ଚିତ । ତାଙ୍କ ବସ୍ତ୍ର ପୁଷ୍ପ ରଞ୍ଜିତ ହୋଇଥିଲା । ତାଙ୍କୁ ଦେଖିଲେ ମନେ ହେଉଥିଲା--ତୁଷାର ମଣ୍ଡିତ ସ୍ୱର୍ଣ୍ଣ ପର୍ବତ ଉପରେ ବାଳସୂର୍ଯ୍ୟଙ୍କର କିରଣ ପଡ଼ିଛି କି ? ମହିଷୀ ଉପରେ ଶାୟିତ ଶ୍ୟାମ କୋମଳ ତୃଣ ଉପରେ ଶୟନ କରିଥିବା ସିଂହ ପରି ବୋଧ ହେଉଥିଲେ ।

Digitized by srujanika@gmail.com

ଦ୍ରୌପଦୀ ତାହାଙ୍କୁ ଆପାଦମସ୍ତକ ଝୁଙ୍କି ନତମସ୍ତକରେ ଭକ୍ତି ଦୃଢ଼ ଭାବରେ ତାଙ୍କର ପାଦକୁ ହଲାଇ ଦେଲେ । ଭୀମ ହଠାତ୍ ଉଠି ପଡ଼ି କହିଲେ, "ତୁ କିଏ ?" ଦ୍ରୌପଦୀ ଉତ୍ତର ଦେଲେ, "ନାଥ, ମୋତେ ଚିହ୍ନିବ କାହିଁକି ? ମୁଁ ତୁମର ଅଭାଗିନୀ ଦାସୀ । ନାନା କାଳେ ବିପଦ ଭୋଗ କରିବା ମୋର ଭାଗ୍ୟରେ ଲେଖା ଅଛି । ସ୍ୱାମୀର ପାଦରେ ମୁଣ୍ଡି ଦେବା କମଳନୀର ଭାଗ୍ୟଲିପି ।"

ଭୀମ ଦ୍ରୌପଦୀଙ୍କୁ ଚିହ୍ନି ପାରି ତାଙ୍କୁ ଆଦରରେ କୋଳରେ ବସାଇ ପଚାରିଲେ, "ଘଟନା କଅଣ, ନିର୍ଭୟରେ କୁହ । ଏବେ ତୁମର କି ବିପଦ ? ଅଜ୍ଞାତରେ ବନବାସ କରିବାକୁ ପଡ଼ିଲେ ମଧ୍ୟ ଯେ ତୁମର ବିପଦର କାରଣ ତାକୁ ନିଶ୍ଚୟ ବିନାଶ କରିବି । ସିଂହର ଅଗଣାରେ ହରିଣ ନୃତ୍ୟ କଲେ ସିଂହ ତାହା ସହ୍ୟ କରି ନ ପାରେ । ଶୀଘ୍ର କହ, କିଏ ଆପଣା ମୁଣ୍ଡ ଉପରକୁ ବଜ୍ର ଡାକି ଆଣିଛି ?"

ଦ୍ରୌପଦୀ କହିଲେ, "ହେ ନାଥ, ଦୁଷ୍ଟ କୀଚକ ମୋ ସହିତ ପାପପ୍ରଣୟ କରିବାକୁ ମନ ବଳାଇଛି । ଆଜି ତାର ଦୂତୀ ମୋତେ ଯାହା କହି ଯାଇଛି, ସେଥିରେ ତା ଉଦ୍ଦେଶ୍ୟ ଆଉ ଏଠାରେ ରହି ହେବ ନାହିଁ । [illegible] ରାଜ୍ୟ, ଧନ, ସୁନ୍ଦରୀରମଣୀ ଓ ରତ୍ନ ସହଜେ ଲୋକମାନଙ୍କ ମନକୁ ଲୋଭିତ କରିଥାନ୍ତି । ଦୁଷ୍ଟ କୀଚକ ମୋତେ ଅସହାୟା ମନେକରି ମୋତେ ପାଇବାକୁ ଲାଳାୟିତ । ଏ ବିଷୟ ମୁଁ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ଜଣାଇଅଛି । ସେ ଏହାର ଭାର ତୁମ ଉପରେ ଛାଡ଼ି ଦେଇଅଛନ୍ତି । ମୁଁ କାଲି ଉତ୍ତର ଦେବି ବୋଲି ଦୂତୀକୁ କହି ବିଦାୟ ଦେଇଅଛି । କାଲି ସେ ଦୂତୀ ଆସି ମୋତେ ଭୟ ଦେଖାଇବ । ପ୍ରତିଶୋଧ ପ୍ର[illegible] ନ କଲେ ବିପଦ ଉପସ୍ଥିତ ହେବ ।"

Digitized by srujanika@gmail.com

ଏହା ଶୁଣି ଭୀମ କ୍ରୋଧରେ ଥରି ଉଠିଲେ । ତାଙ୍କର ମୁଖମଣ୍ଡଳ ରକ୍ତ ବର୍ଣ୍ଣ ଧାରଣ କଲା । ତାଙ୍କର ରକ୍ତଚକ୍ଷୁ ବିସ୍ଫାରିତ ହୋଇ ଘୂରିବାକୁ ଲାଗିଲା । ଦେହର ପ୍ରତି ଶିରାରେ ଉଷ୍ଣ ରକ୍ତ ପ୍ରବାହିତ ହେବାକୁ ଲାଗିଲା । ତାଙ୍କର ମନ ହେଲା ଯେ ସେ ସେହି ମୁହୂର୍ତ୍ତରେ ଯାଇ କୀଚକର ବେକ ମୋଡ଼ି ଦେବେ । କିନ୍ତୁ କ୍ଷଣ ମାତ୍ର ଭାବି ସେ ସ୍ଥିର କଲେ ଯେ ଦୁଷ୍ଟ କୀଚକକୁ ଏକାକୀ ନିର୍ଜନ ସ୍ଥାନରେ ବଧ କରିବା ଉଚିତ ହେବ । ଦୁଷ୍ଟ ଯେଉଁ ପାପପ୍ରଣୟକୁ ଆଶା କରିଛି, ସେହି ପାପପ୍ରଣୟର ଛଳନାରେ ତାକୁ ବିନାଶ କରିବାକୁ ହେବ । ତାପରେ ସେ ଦ୍ରୌପଦୀଙ୍କର ହସ୍ତ ଧରି କହିଲେ, "ପ୍ରିୟେ, ଆଜି ଚିନ୍ତା କରନାହିଁ । କାଲି ଦୁଷ୍ଟ ଆସିଲେ ତାକୁ କହିବ,—କୀଚକ କାଲି ରାତିରେ ସୁରଙ୍ଗପକଣ୍ଠରେ ଥିବା ନୃତ୍ୟ ଗୃହକୁ ଯିବ । ମୁଁ ସେଠାକୁ ଯିବି ।—ମୁଁ ତୁମର ବେଶଧରି ସେଠାକୁ ଯିବି ଓ ମୋର କର୍ତ୍ତବ୍ୟ ସାଧନ କରିବି ।"

ଭୀମଙ୍କର ଏହି ବାକ୍ୟରେ ଦ୍ରୌପଦୀଙ୍କର ଚିନ୍ତା ଦୂର ହେଲା । ସେ ଭୀମଙ୍କୁ ପ୍ରଶଂସା କରି ନିଜ ପ୍ରକୋଷ୍ଠକୁ ଫେରିଗଲେ । ସମସ୍ତ ଘଟନା ମନେ ମନେ ଚିନ୍ତାକରି ସେ ରାତିଟି ଅତିବାହିତ କଲେ ।

— — —

Digitized by srujanika@gmail.com

# ଷଷ୍ଠ ଅଧ୍ୟାୟ

ରବି ପ୍ରଭାତ ହୁଅନ୍ତେ ସୂର୍ଯ୍ୟ ଆକାଶରେ ଉଦିତ ହେଲେ । ଏହି ସମୟରେ ଦୂତୀ ଉତ୍ତର ନେବା ପାଇଁ ସୈରନ୍ଧ୍ରୀଙ୍କ ନିକଟରେ ଉପସ୍ଥିତ ହେଲା । ଦ୍ରୌପଦୀ ତାକୁ କହିଲେ, "ମୀଚ କୀଚକର ମନ ଅନୁସାରେ କାର୍ଯ୍ୟ କରିବାକୁ ବାଧ୍ୟ ନ ହେବାକୁ ମୋର ଶକ୍ତି ନାହିଁ । କିନ୍ତୁ ଆମର ଏହି ପାପପ୍ରଣୟ କଥା ଯେପରି କେହି ନଜାଣନ୍ତି । କାଳେ ଏ କଥା ପ୍ରକାଶ ପାଇବ, ମୁଁ ଲୋକହସା ହେବି, ଏହାହିଁ ମୋର ଭୟ ।"

ଦୂତୀ କହିଲା, "ସେ, ତୁ ଓ ମୁଁ ଏହି ତିନୋଜଣଙ୍କ ଛଡ଼ା ଆଉ କିଏ ଏହା ଜାଣିବ ? ହେ ଚନ୍ଦ୍ରମୁଖି, ମନଇଚ୍ଛା ସଙ୍କେତ ସ୍ଥଳକୁ ଅଙ୍ଗୀକାର କରୁଥିବୁ । କହ, ଆଜି କେଉଁଠାରେ କୀଚକରୂପୀ ଭ୍ରମର ତୋର ମୁଖକମଳକୁ ଚୁମ୍ବି କୃତାର୍ଥ ହେବ ?"

ଦ୍ରୌପଦୀ ଉତ୍ତର କଲେ, "ନଗରର ପ୍ରାନ୍ତ ଭାଗରେ ଯେଉଁ ନୃତ୍ୟମନ୍ଦିର ଅଛି, ତାହାହିଁ ଉପଯୁକ୍ତ ସ୍ଥାନ । ରାତିରେ ଚନ୍ଦ୍ରକିରଣରେ ତାହା ମନୋହର ହୋଇଥିବ । ଉପବନର ପବନ ପୁଷ୍ପର ସୌରଭ ବହି ଆଣୁଥିବ । ଅର୍ଦ୍ଧରାତ୍ର ସମୟରେ ନିର୍ଜନରେ 'ବଲୀ'ଙ୍କ ସହିତ ମୋର ଭେଟ ହେବ । ଦ୍ରୌପଦୀ ଯେ 'ବଲ' ଅର୍ଥାତ୍ 'ବଧ ଜୀବ' ଅର୍ଥରେ ଏହା କହୁଥିଲେ, ତାହା ବୁଝି ନପାରି ଦୂତୀ ଆନନ୍ଦରେ ଫେରି ଯାଇ କୀଚକକୁ ଏହି 'ଶୁଭ' ସମ୍ବାଦ ଦେଲା । ଏହା ଶ୍ରବଣ କରି କୀଚକର ମନ ଆନନ୍ଦ ସାଗରରେ ବୁଡ଼ିଗଲା । ଜନ୍ମରୁ ଯେ ଦରିଦ୍ର ସେ ହଠାତ୍ ରତ୍ନ ଲାଭକଲା କି ? ସେ ନୃତ୍ୟଗୃହକୁ ରାଜପୁରପରି ସୁସଜ୍ଜିତକରି ସୈରନ୍ଧ୍ରୀ ଆଶାରେ ମନକୁ ମଜାଇ ରାତିର ଆଗମନକୁ ରହିଁରହିଲା ।

Digitized by srujanika@gmail.com

ଆକାଶରେ ଚନ୍ଦ୍ର ଉଦିତ ହେଲେ । ତା ସଙ୍ଗେ ସଙ୍ଗେ ଉପବନରେ ମଲ୍ଲିକା ବିକସିତ ହେଲା । ସତେ ଅବା ପୃଥିବୀ ଆନନ୍ଦରେ ହସି ଉଠିଲା କି ?

ରାତ୍ରିର ପ୍ରଥମ ପ୍ରହରରେ କୀଚକ ଶରୀରରେ ଚନ୍ଦନ ଲେପି, ବକ୍ଷରେ ପୁଷ୍ପମାଳ ଲମ୍ବାଇ, ସୂକ୍ଷ୍ମ ଶୁଭ୍ର ପଟ୍ଟବସ୍ତ୍ର ପରିଧାନ କରି, ନାନାଅଳଙ୍କାରରେ ଭୂଷିତ ହୋଇ ନୃତ୍ୟପୁରରେ ଉପସ୍ଥିତ ହେଲା । କିନ୍ତୁ ସେ ସୈରିନ୍ଧ୍ରୀର ଦର୍ଶନ ପାଇଲାନାହିଁ । ସେ ଭାବିଲା, "ସୈରିନ୍ଧ୍ରୀ କଅଣ ଆଗରୁ ଆସି ମୋତେ ଖୋଜି ଖୋଜି ଫେରିଗଲା । ଅଥବା ସେ ଆସି ଉପବନରେ ଭ୍ରମଣ କରୁଛି କି ?" ଏହା ଭାବି ସେ ଉଦ୍ୟାନରେ ଅନୁସନ୍ଧାନ କଲା । କେଉଁଠାରେ ବୃକ୍ଷ ଅନ୍ତରାଳରେ ପଡ଼ିଥିବା ଚନ୍ଦ୍ରକିରଣକୁ ସୈରିନ୍ଧ୍ରୀ ମନେ କରି ସେ ଧାଉଁଥାଏ । କେଉଁଠାରେ ବିକସିତ ପୁଷ୍ପଶୋଭିତ ଲତାକୁ ଦେଖି ତାକୁ ସୈରିନ୍ଧ୍ରୀ ମନେ କରି ତାହାପାଖକୁ ଧାଇଁ ଯାଉଥାଏ । ଚନ୍ଦ୍ରକିରଣ ପଡ଼ିଥିବା ଆଲବାଲକୁ ଦେଖି ସେ ତାକୁ ସୈରିନ୍ଧ୍ରୀର ପଦ ବୋଲି ଭ୍ରମ କରୁଥାଏ । କୌଣସି ପକ୍ଷୀ ହଠାତ୍ ନୀଡ଼ରୁ ଉଠିଯାଇ ଶବ୍ଦ କଲାକ୍ଷଣି ସେ ତାକୁ ସୈରିନ୍ଧ୍ରୀର ମୁଖଶବ୍ଦ ମନେକରି ଦଉଡ଼ୁଥାଏ । ବେଳେବେଳେ ତା ମନରେ ନୈରାଶ୍ୟ ଜାତ ହେଉଥିଲା । କିନ୍ତୁ ସଙ୍ଗେ ସଙ୍ଗେ ଆଶା ତାହାର ସ୍ଥାନ ଅଧିକାର କରୁଥିଲା । ଶେଷରେ ତାହା ମନରେ ବିଷାଦ ଜାତ ହେଲା । ଏହିପରି ରାତ୍ରିର ଦ୍ୱିତୀୟ ପ୍ରହର ଉପସ୍ଥିତ ହେଲା ।

ଭୀମ ରାତ୍ରିର ପ୍ରଥମ ପ୍ରହରରେ ନିଜର କାର୍ଯ୍ୟ ଶେଷକରି ଦ୍ୱିତୀୟ ପ୍ରହରରେ ନାରୀବେଶ ପରିଧାନ କଲେ । ସେ ନୃତ୍ୟଗୃହରେ ପହଞ୍ଚି କ୍ରୋଧରେ କୀଚକର ଆଗମନକୁ ଅପେକ୍ଷାକରି ରହିଲେ । ଗୃହଟି ନାନାରତ୍ନରେ ଖଚିତ । ରତ୍ନକିରଣର ଜ୍ୟୋତିରେ

Digitized by srujanika@gmail.com

ଅନ୍ଧକାରେ ଅନ୍ତର୍ହିତ ହୋଇଅଛି । ଗୃହର ଚତୁର୍ଦ୍ଦିଗରେ ସୁନ୍ଦର ପୁଷ୍ପୋଦ୍ୟାନ । ଧୀର ପବନ ପୁଷ୍ପସୌରଭ ନେଇ ବହୁଛି । ଶୀତଳ ଚନ୍ଦ୍ରକିରଣ ପୃଥିବୀକୁ ଧୌତ କରୁଛି । କିନ୍ତୁ ଏସବୁ ସୌନ୍ଦର୍ଯ୍ୟ ପ୍ରତି ଭୀମର ଦୃଷ୍ଟି ନାହିଁ । ତାର ଆଖି କେବଳ କୀଚକକୁ ଖୋଜି ବୁଲୁଛି ।

ଏଣେ କୀଚକ ଉପବନ ମଧ୍ୟରେ କିଛିକାଳ ଭ୍ରମଣ କରି ସୈରିନ୍ଧ୍ରୀଙ୍କୁ ନ ପାଇ ନୃତ୍ୟଗୃହକୁ ଗଲା । ଗୃହ ମଧ୍ୟରେ ଗୋଟିଏ ଧବଳ ମୂର୍ତ୍ତି ଦେଖି, ତାହାକୁ ସୈରିନ୍ଧ୍ରୀ ବୋଲି ମନେ କରି ଧରି ପକାଇଲା । ସେତେବେଳକୁ ଭୀମ କ୍ଷୁଧାତୁର ଶାର୍ଦ୍ଦୂଳ ପରି ବସିଥିଲା । ସେ କୀଚକର ଗଳାକୁ ଧରି ମାଡ଼ ବସିଲା । କୀଚକ ଦେଖିଲା ଯେ ଏହି ମୂର୍ତ୍ତିଟି ସୈରିନ୍ଧ୍ରୀ ନୁହେଁ, ତାର ଶତ୍ରୁ । ମେଘ ଗର୍ଜନ କରିବାର ଶବ୍ଦ ଝଡ଼ ପବନରେ ବାଉଁଶର ଶବ୍ଦ ପରି ହେଲା । ଭୀମଙ୍କ ସଙ୍ଗେ ସେ ମଲ୍ଲ ଯୁଦ୍ଧରେ ଲିପ୍ତ ହେଲା । ଦୁହିଁଙ୍କର ପାଦ ପ୍ରହାରରେ ବିରାଟ ନଗରୀ କମ୍ପି ଉଠିଲା । ଏହି କମ୍ପନ ଫଳରେ ନଗରବାସୀମାନଙ୍କ ମଧ୍ୟରୁ କାହାର ନୌକା ଅରୋହଣର, କାହାର ବନଲତା ଦୋଳାରେ ଦୋଳିବାର, କାହାର ଅଶ୍ୱ ଉପରେ ଯିବାର ଅନୁଭୂତି ଜାଗ୍ରତ ହେଲା । ଉଭୟେ ପରସ୍ପରକୁ ମୁଷ୍ଟିଦ୍ୱାରା ଆଘାତ କଲାବେଳେ ପର୍ବତ ଉପରେ ବଜ୍ର ପଡ଼ିବା ପରି ଶବ୍ଦ ହେଲା । ଦୁହେଁ ପରସ୍ପର ଗଡ଼ାଗଡ଼ି ଭିଡ଼ାଭିଡ଼ି ହୋଇ ରଡ଼ି କରୁଥାନ୍ତି । ଦୁହିଁଙ୍କର ତର୍ଜନ ଗର୍ଜନ ଓ ହୁଙ୍କାର ଶବ୍ଦ ହାତୀ ହାତୀ ମଧ୍ୟରେ ବା ସିଂହ ସିଂହ ମଧ୍ୟରେ ଯୁଦ୍ଧର ଶବ୍ଦ ପରି ହେଲା । ଦୁହେଁ ପରସ୍ପରକୁ କହୁଥାନ୍ତି, "ଆଜି ତୁ ନିଶ୍ଚୟ ମରିବୁ । ବିଧାତା ମୋତେ ମନୋମତ ଯୁଦ୍ଧର ସୁଯୋଗ ଦେଇଛି ।" କୀଚକ ପଚାରିଲା "ତୁ କିଏ ?" ସେତେ-

Digitized by srujanika@gmail.com

ବେଳେ ଭୀମ ଉତ୍ତର କଲା, "ମୁଁ ତୋର ଶତ୍ରୁ । ମୋତେ ଚିହ୍ନିଲେ ତୋର କି ଲାଭ ? ତୁ ତୋର ଇଷ୍ଟ ଦେବତାଙ୍କୁ ସ୍ମରଣ କର ।" ଶେଷରେ ଭୀମର ବଜ୍ରମୁଷ୍ଟି ସହି ନ ପାରି କୀଚକ ଗର୍ଜନ କରି ପ୍ରାଣତ୍ୟାଗ କଲା ।

ଭୀମ କୀଚକର ନିର୍ଜୀବ ଶରୀରକୁ ସେହିଠାରେ ତ୍ୟାଗ କରି ପାକଶାଳାକୁ ଫେରିଗଲା ।

—*—

## ସପ୍ତମ ଅଧ୍ୟାୟ

ଊଷା-ରମଣୀ କୁସୁମରେ ଭୂଷିତ ହୋଇ ଆଗମନ କଲା । ତାହାର ପଦ୍ମ-ନୟନ ଭ୍ରମର-ଅଞ୍ଜନରେ ରଞ୍ଜିତ । ପକ୍ଷୀର କାକଳୀ ତାର କଙ୍କିଣୀର କିଣିକିଣି ଧ୍ୱନି ପରି ହେଲା । କୁନ୍ଦପୁଷ୍ପ ତାର ଦନ୍ତ ସ୍ୱରୂପ । ଏହାର ଦର୍ଶନରେ ପ୍ରାଣୀମାନଙ୍କର ମନ ମୁଗ୍ଧ ହୋଇଗଲା । ପ୍ରଭାତୀ ତାରା ତାର ଉଜ୍ଜ୍ୱଳ ନଥାମଣି ପରି ଶୋଭା ପାଉଥିଲା । ଅରୁଣ ତାର ରକ୍ତିମ ଚରଣ ପରି ।

ଏହି ମନୋହର ପ୍ରଭାତ କାଳରେ ନୃତ୍ୟ ମନ୍ଦିରର ପ୍ରହରୀ ଥରି ଥରି ରାଜାଙ୍କ ଛାମୁରେ ଜଣାଇଲା, "ହେ ମହାରାଜ, ଏ ଦାସ ନୃତ୍ୟଗୃହରେ ଏକ ଅଦ୍ଭୁତ ଘଟଣା ଦେଖି ଆସିଛି । ନିଜେ ନ ଦେଖିଲେ ଛାମୁ ତାହା ବିଶ୍ୱାସ କରିପାରିବେ ନାହିଁ । ଏ ଅଧମ ରାଜଛାମୁରେ କଅଣ ଅବା ଜଣାଇବ ?"

ରାଜା ବିସ୍ମିତ ହୋଇ କହିଲେ, "ପ୍ରହରି, ତୁ ଯାହା ଦେଖିଛୁ ନିର୍ଭୟରେ ପ୍ରକାଶ କର । ତୋ କଥା ଶୁଣିଲା ବେଳୁଁ ମୋର ମନରେ ଦୁଃଖ ହେଉଛି । ନାନା ସଂଶୟ ଜାତ ହେଉଅଛି । କିଛି

Digitized by srujanika@gmail.com

ଅମଙ୍ଗଳ ଘଟି ନାହିଁ ତ ? ଆଗେ ତୋହଠାରୁ ଘଟଣା ଶୁଣିଲେ ପରେ ଦେଖିବାକୁ ଯିବି ।"

ପ୍ରହରୀ ଉତ୍ତର କଲା, "ମହାରାଜ, ନୃତ୍ୟଗୃହର କବାଟ ଫିଟିଛି; ଘରଟି କ ଧୂଳିରେ ପୂର୍ଣ୍ଣ । ଘର ଭିତରେ ଗୋଟାଏ ପ୍ରକାଣ୍ଡ ନିର୍ଜୀବ ଶରୀର ପଡ଼ିଛି । ତାର ହନୁ ଭାଙ୍ଗି ଯାଇଛି । ଦେହ ସାରା ରକ୍ତ ଜରଜର ହୋଇଛି । ମୁଁ ଡରି ଡରି ସେହି ଶବ ପାଖକୁ ଯାଇ ଦେଖିଲି ଯେ ତାହା କୀଚକଙ୍କ ପରି ଦିଶୁଛି ।" ରାଜା ଏହା ଶୁଣି ବିଚଳିତ ହୋଇ ନୃତ୍ୟଗୃହ ଆଡ଼କୁ ଧାଇଁଲେ । ଅନୁଚରମାନେ ତାଙ୍କ ପଛେ ପଛେ ଦୌଡ଼ିଲେ । ରାଜା ଏପରି ବ୍ୟସ୍ତ ହୋଇ ଯାଉଥିବାର ଦେଖି ପୁରର ନରନାରୀମାନେ ଦଳ ଦଳ ହୋଇ ତାଙ୍କର ଅନୁଗମନ କଲେ ।

ରାଜା ନୃତ୍ୟଗୃହରେ ପ୍ରବେଶ କରି ଶବ ଉପରେ ଦୃଷ୍ଟି ପକାଇଲେ । ମୂର୍ତ୍ତିଟି ବିରୂପ ଓ ବିକୃତ ହୋଇଯାଇଛି । ଜ୍ୟୋତିହୀନ ଚକ୍ଷୁରେ ପଲକ ନାହିଁ । ଜିହ୍ୱା ବାହାରି ପଡ଼ିଛି ଓ ଦୁଇ ଦନ୍ତପନ୍ତି ମଧ୍ୟ ଚିପି ହୋଇ ରହିଛି । ନାସାଦ୍ୱାର ବାଟେ ରକ୍ତ ବାହାରି ଗଳା ଓ ବକ୍ଷଦେଶକୁ ବ୍ୟାପି ଭୂମିରେ ପଡ଼ିଛି । ମାଛିମାନେ ସେହି ରକ୍ତ ଉପରେ ଭଣଭଣ ହେଉଅଛନ୍ତି । ମସ୍ତକର କେଶ ଧୂଳିରେ ଧୂସରିତ ହୋଇ ଭୂମିରେ ଲୋଟୁଛି । ସେଥିରୁ କେତେକ ମୁଖ ଉପରେ ପଡ଼ିଛି । କୀଚକର ବନ୍ଧୁବାନ୍ଧବମାନଙ୍କୁ କରୁଣ ରସସାଗରରେ ବୁଡ଼ାଇବା ପାଇଁ ବିଧାତା ସେଥିରେ ବିଭତ୍ସ ରସର ତରଙ୍ଗ ସୃଷ୍ଟି କରିଛି କି ? ରାଜା ନିରୀକ୍ଷଣ କରି ଏହା କୀଚକର ଶବ ବୋଲି ଚିହ୍ନି ପାରିଲେ ମାତ୍ର ତାଙ୍କ ମନରେ ବିଶ୍ୱାସ ହେଲା ନାହିଁ । 'ଚକ୍ଷୁ କର୍ଣ୍ଣର ବିବାଦ' ବୋଲି କଥା ଅଛି; କିନ୍ତୁ ଏଠାରେ ରାଜାଙ୍କର ଚକ୍ଷୁ ଓ ମନ ମଧ୍ୟରେ ବିବାଦ

Digitized by srujanika@gmail.com

ଦେଖାଗଲା । ଏହା ସଙ୍ଗେ ରାଜାଙ୍କ ହୃଦୟରୁ ଶୌର୍ଯ୍ୟ ଧୈର୍ଯ୍ୟ ପ୍ରଭୃତି ଗୁଣ ଉଭେଇ ଗଲା । ସେ ଅଧୀର ହୋଇ ନିଜ ନଗରକୁ ଫେରି ଆସିଲେ । କୀଚକର ମୃତ୍ୟୁ ସମ୍ବାଦ ସର୍ବତ୍ର ବ୍ୟାପିଗଲା ।

କୀଚକର ଅନେକଶତ ଭାଇ ଥିଲେ । ସେମାନେ ବ୍ୟାକୁଳ ହୋଇ ଭାଇର ଶବ ଦେଖିବାକୁ ଗଲେ । ସତେ ଅବା ସେମାନଙ୍କ ମସ୍ତକରେ ବଜ୍ରପାତ ହେଲା । ସେମାନେ ଜାଣିପାରିଲେ ଯେ କୀଚକର ମୃତ୍ୟୁ ସୈରନ୍ଧ୍ରୀ ପାଇଁ ହୋଇଛି । ତେଣୁ ସେମାନେ ସ୍ଥିର କଲେ ଯେ କୀଚକର ଶବ ସହିତ ସୈରନ୍ଧ୍ରୀକୁ ମଧ୍ୟ ଚିତାରେ ଦାହ କରିବାକୁ ହେବ ।

କେତେ ଜଣ ଶବ ନେଇ ଗଲେ । ଆଉ କେତେ ଜଣ ଶୀଘ୍ର ଯାଇ ଚନ୍ଦନ କାଷ୍ଠରେ ଚିତା ସଜାଡ଼ି ଦେଲେ । ଅନ୍ୟ ଭାଇମାନେ କ୍ରୋଧରେ କମ୍ପି ସୈରନ୍ଧ୍ରୀ ନିକଟରେ ଉପସ୍ଥିତ ହେଲେ । ସେମାନେ ତାଙ୍କର କେଶ ଧରି ଆକର୍ଷଣ କରିବାକୁ ବାହାରିବାରୁ ସେ ବ୍ୟାକୁଳ ହେଲେ । ଏହି ସମୟରେ ଭୀମ କ୍ରୋଧରେ ଥରି ଥରି ସେମାନଙ୍କ ନିକଟରେ ପହଞ୍ଚିଲା । ସେ ସର୍ବାଙ୍ଗରେ ହାଣ୍ଡି କଳା ବୋଳି ହୋଇଥିଲା । ତାର ଭୟଙ୍କର ରୂପ ଦେଖି ମନେ ହେଲା, ପାଗଳା ହାତୀ ପଦ୍ମ ବନରେ ପଶିଗଲା କି ? କାହାକୁ ଗୋଇଠା ମାରି, କାହାକୁ ମୁଥ ମାରି ସେ କେତେକଙ୍କୁ ବଧ କଲା । କାହାର ଚୁଟି ଧରି ବୁଲାଇ ବୁଲାଇ ଫିଙ୍ଗି ଦେବାରୁ ତାର ପ୍ରାଣ ବାହାରିଗଲା । ସେ କାହାର ଛାତି ଚିପି, କାହାର ଗୋଡ଼ ଟେକ କରି ଦେଇ, କାହାର ମୁଣ୍ଡକୁ ଛେଚି ସେମାନଙ୍କୁ ମାରିଲା । ଆଉ ଅଳ୍ପ କେତେ ଜଣ ଭୟରେ ନିଜ ଜୀବନ ନେଇ ପଳାଇଗଲେ । ଭୀମ ଭୟଙ୍କର ମୂର୍ତ୍ତି ଧରି ସେମାନଙ୍କ ପଛେ ପଛେ ଧାଇଁଲା । ତାର କେଶ ଫରଫର ହୋଇ ଉଡୁଥାଏ,

Digitized by srujanika@gmail.com

ତାଙ୍କ ଗୃହକୁ ଭସ୍ମକରି ପଶୁଥାଏ । ନଗରର ଲୋକେ ମନେ କଲେ, ଏ କଅଣ ସ୍ୱୟଂ ଯମରାଜ । ନଗରର ନରନାରୀମାନେ ଭୟରେ ନିଜ ନିଜ ଘରେ ଲୁଚି ଗଲେ । କିଏ ପୁଅକୁ ପାଖରେ ନ ଦେଖି ଦୀର୍ଘଶ୍ୱାସ ପକାଇ ଖୋଜିବାକୁ ଲାଗିଲା, କିଏ ଅବା ପୁଅକୁ ଧରି ଘରକୁ ଧାଇଁଲା । ବାଜକୁ ଦେଖିଲେ ପକ୍ଷୀମାନେ ଭୟରେ ସ୍ତମ୍ଭୀଭୂତ ହେଲାପରି ନଗରବାସୀମାନେ ଭୀମଙ୍କୁ ଦେଖି ସ୍ତମ୍ଭୀଭୂତ ହୋଇଗଲେ ।

ଏଣେ ଶବବାହକମାନେ ଚିତାନଳ ଜାଳି ସୈରନ୍ଧ୍ରୀକୁ ଆଣିବା ପାଇଁ ଯାଇଥିବା ଲୋକମାନଙ୍କୁ ଉଣ୍ଡି ବସିଥିଲେ । ଦେଖାଗଲା ଯେ ସେମାନେ ସୈରନ୍ଧ୍ରୀକୁ ଆଣିବେ କଅଣ, ନିଜେ ପଳାଉ ଅଛନ୍ତି । ସେମାନଙ୍କ ପଛରେ ଗୋଟିଏ ଭୟାନକ କାଳିଆ ମୂର୍ତ୍ତି ଧାଇଁଛି । ମତେ ଅବା ହରିଣପଲ ପଛରେ ଭୋକିଲା କାଳିଆ ବାଘ ଧାଉଁଛି ।

ସେମାନେ ପଳାଇ ଆସି ଚିତା ପାଖରେ ପହଞ୍ଚି ଭାଇମାନଙ୍କୁ କହିଲେ, "ଆଉ ଜୀବନରେ ଆଶା ନାହିଁ । କାହୁଁ ଏ କାଳିଆ ଜଣେକ ଆସି ଆମର ଅନେକ ଭାଇଙ୍କୁ ମାରିଲାଣି । ଏବେ ଆମଙ୍କୁ ମାରିବାକୁ ଧାଇଁଛି ।" ଏହା ଶୁଣି ଭାଇମାନେ ସମସ୍ତେ ମିଶି ତାଙ୍କୁ ମାରିବାକୁ ପ୍ରସ୍ତୁତ ହେଲେ ।

କିଏ କହିଲା, "ତାର ଚୁଟି ଧରି ତାକୁ ମାର ।" କିଏ କହିଲା, "ତାର ଗୋଡ ଦୁଇଟା ଧରି ଫିଙ୍ଗି ଦେବା । ଚିତାଗ୍ନିରେ ତାର ଦେହ ପୋଡ଼ି ଯାଉ, ସେ ମରୁ ।" କହୁଁ କହୁଁ ସେହି କୃଷ୍ଣକାୟ ପୁରୁଷ ସେଠାରେ ଉପସ୍ଥିତ ହୋଇ ସେମାନଙ୍କ ଉପରେ ଅତ୍ୟାଚାର କରିବାକୁ ଲାଗିଲେ । ସେ କାହାର ଚୁଟି ଧରି, କାହାର ହାତ ଧରି ଗୋଟି ଗୋଟି କରି ସେମାନଙ୍କୁ ସେହି ଚିତାନଳ

Digitized by srujanika@gmail.com

ଉପରେ ଫିଙ୍ଗି ଦେଲା । ଏହାପରେ କୀଚକର ଭାଇମାନେ ସମସ୍ତେ ଜୀବନ୍ତ ଦଗ୍ଧ ହେଲେ । ସେଥିରେ କୀଚକର ଶବ ପଡ଼ିବାରୁ ଅଗ୍ନି ଶିଖା ବୃଦ୍ଧି ପାଇଲା । ଶବମାନଙ୍କ ରକ୍ତରେ ଚଡ଼ାରୁ ଚଇଁ ଚଇଁ ସିଇଁ ସିଇଁ ଶବ୍ଦ ଶୁଣାଗଲା । କଟ୍ କଟ୍ ଫଟ୍ ଫଟ୍ ଶବ୍ଦରେ ଅଗ୍ନି ଭୟଙ୍କର ଜଣାଗଲା । ଯେଉଁମାନଙ୍କ ମହିମା ପୃଥିବୀଯାକ ବ୍ୟାପିଥିଲା, ସେମାନେ କ୍ଷଣକ ଭିତରେ ପାଉଁଶରେ ପରିଣତ ହୋଇଗଲେ ।

ଏହାପରେ ଭୀମ ନିଜ ଶରୀରର କଳା ରଙ୍ଗ ଧୋଇ ସ୍ନାନ-ସାରି ରନ୍ଧନ ଗୃହରେ ନିଜ କାର୍ଯ୍ୟରେ ନିଯୁକ୍ତ ରହିଲେ । କୀଚକର ଗୃହ, ରାଜନବର, ନଗର ଶୋକ ସାଗରରେ ଭାସିଲା । ସମସ୍ତଙ୍କ ହୃଦୟରେ ଭୟର ତରଙ୍ଗ ଖେଳିଗଲା । କୀଚକପୁରର ରମଣୀମାନେ ଚକ୍ଷୁରୁ ଲୋତକଧାର ବୁହାଇଲେ । ଅସ୍ତବ୍ୟସ୍ତ କେଶବାସରେ ସେମାନେ ଦୀର୍ଘଶ୍ୱାସ ପକାଇ, କପାଳରେ କର ମାରି ଭୂମିରେ ଗଡ଼ିବାକୁ ଲାଗିଲେ । ଲୋତକସିକ୍ତ ଭୂମିରେ ଗଡ଼ିବାରୁ ସେମାନଙ୍କର ଗଣ୍ଡ ଓ ବକ୍ଷ ଦେଶ ପଙ୍କରେ ଲିପ୍ତ ହୋଇଗଲା । ସେମାନଙ୍କର କ୍ରନ୍ଦନ ଧ୍ୱନିରେ ପୁର ପ୍ରତିଧ୍ୱନିତ ହୋଇ ମେଘ ଗର୍ଜନ ପରି ଶୁଣାଗଲା । ବିଧବା ରମଣୀମାନେ ଶୋକ ପୂର୍ଣ୍ଣ ହୃଦୟରେ ସ୍ୱାମୀମାନଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଯଥାବିଧି ପାଳନ କରି ନିଜ କର୍ମ ଆଦରି ରହିଲେ । ସୁଦେଷ୍ଣା ପଞ୍ଚଗନ୍ଧର୍ବଙ୍କ କୋପ ଭୟରେ ସୈରିନ୍ଧ୍ରୀଙ୍କର ମନ ରକ୍ଷା କରି ନୀରବ ହୋଇ ରହିଲେ । ରାଜା, ନବରବାସୀ ଓ ନଗରର ରମଣୀମାନେ ସମସ୍ତେ ଭୟରେ ଦିନ ଯାପନ କରିବାକୁ ଲାଗିଲେ ।

—❋—

Digitized by srujanika@gmail.com

# କବି ଗଙ୍ଗାଧର ମେହେର

ପ୍ରତିଭା ଲୁଚି ରହେ ନାହିଁ । ପାଉଁଶ ଗୁଡ଼ ମଧ୍ୟରେ ଲୁକ୍କାୟିତ ଅଗ୍ନି ଭଳି ତାହା କୁହୁଳି କୁହୁଳି ଦିନେନା ଦିନେ ପ୍ରକଟିତ ହୁଏ । ପ୍ରତିଭାର ପ୍ରକାଶ ପାଇଁ କୌଣସି ଅଂଶରେ ସାଗର ଆବଶ୍ୟକତା ଥାଇପାରେ, ମାତ୍ର ପ୍ରତିକୂଳ ପରିସ୍ଥିତିରେ ଏକମାତ୍ର ପ୍ରତିଭାବନ୍ତ ଲୋକ ବିକାଶପ୍ରାପ୍ତ ହୁଏ । ପୃଥିବୀର ଯେ କୌଣସି ମହାନ୍ ପୁରୁଷଙ୍କର ଜୀବନୀ ଆଲୋଚନା କଲେ ଏହି ସତ୍ୟଟି ଉଦ୍‌ଘାଟିତ ହୋଇ ପାରିବ । ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ବରେଣ୍ୟ ସାଧକ କବି ଗଙ୍ଗାଧରଙ୍କର ଜୀବନୀ ଏହିଭଳି ନାନା ପ୍ରତିକୂଳ ପରିସ୍ଥିତି ପରିବେଶ ମଧ୍ୟରେ ଅଗ୍ରସର ହୋଇଥିଲା ।

ଗଙ୍ଗାଧର କୌଣସି ତଥାକଥିତ ଅଭିଜାତ ପରିବାରରେ ଜନ୍ମଗ୍ରହଣ କରିନଥିଲେ । ଅଥବା ପାରିବାରିକ ପରମ୍ପରା ଦୃଷ୍ଟିରେ ତାଙ୍କର କୌଣସି ସମୃଦ୍ଧ ସଂସ୍କାର ମଧ୍ୟ ନଥିଲା । ସେ ୧୮୬୨ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୯ ତାରିଖ ଦିନ ଶ୍ରାବଣପୂର୍ଣ୍ଣିମୀ ତିଥିରେ ସମ୍ବଲପୁର ଅନ୍ତଃପାତି ବରପାଲି ଗ୍ରାମର ଏକ ବସ୍ତ୍ରଶିଳ୍ପୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଏହି ବସ୍ତ୍ରଶିଳ୍ପୀମାନେ ସେ ଅଞ୍ଚଳରେ ଭୂଲିଆଁ ନାମରେ ପରିଚିତ । ଗଙ୍ଗାଧରଙ୍କ ଗୋସେଇଁ ବାପା ସଦାଶିବ ବସ୍ତ୍ରବୟନ ଏବଂ ବୈଦ୍ୟପଣରେ ଅତ୍ୟନ୍ତ ଦକ୍ଷ ଥିଲେ । ତାଙ୍କର ନାତି ଗଙ୍ଗାଧର ଛନ୍ଦଚର୍ଚ୍ଚା ଓ ଗ୍ରନ୍ଥଚର୍ଚ୍ଚାରେ ଜୀବନ ଅତିବାହିତ କରି ଓଡ଼ିଆ ସାହିତ୍ୟ ସଂସାରରେ ଜନମାନସ କବି ଗୌରବର ଅଧିକାରୀ ହୋଇଅଛନ୍ତି ।

Digitized by srujanika@gmail.com

ଗଙ୍ଗାଧରଙ୍କର ପାରିବାରିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ତାଙ୍କର ପିତା କର୍ମଠ ନ ଥିଲେ । ଆଳସ୍ୟରେ ଜୀବନଯାପନ କରିଥିବାରୁ ପିତାମହ ସଦାଶିବ ବିରକ୍ତ ହୋଇ ତାଙ୍କୁ ଏକାନ୍ନବର୍ତ୍ତୀ ପରିବାରରୁ ଅଲଗା କରି ଦେଇଥିଲେ । ତେଣୁ ଗଙ୍ଗାଧରଙ୍କର ଅର୍ଥନୈତିକ ଦୁର୍ଗତିର ସୀମା ରହିଲା ନାହିଁ । ଦାରିଦ୍ର୍ୟର ଏହିରି ଘନଘଟା ମଧ୍ୟରେ କୌଳିକ ପ୍ରଥା ଅନୁସାରେ ସେ ୧୦ ବର୍ଷ ବୟସରେ ବିବାହ କରିଥିଲେ । ଅର୍ଥାଭାବ ହେତୁ ସେ ପିଲାଦିନେ ପାଠପଢ଼ା ଶେଷ କଲା ପର୍ଯ୍ୟନ୍ତ ଖଣ୍ଡିଏ ସାର୍ଟ ପିନ୍ଧିପାରି ନ ଥିଲେ ନଅ ବର୍ଷ ବୟସରେ ପିତାଙ୍କ ପ୍ରତିଷ୍ଠିତ ପାଠଶାଳାରେ ପ୍ରବେଶ କରିଥିଲେହେଁ ଅଳ୍ପକାଳ ପରେ ସେହି ଅନୁଷ୍ଠାନ ଭାଙ୍ଗି ଯାଇଥିବାରୁ ପରେ ସେ ଶିକ୍ଷକ ଘନଶ୍ୟାମ ମିଶ୍ରଙ୍କ ତତ୍ତ୍ୱାବଧାନରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ ।

ତତ୍କାଳୀନ ସମାଜରେ ଇଂରେଜୀ ଶିକ୍ଷା ଓ ସଭ୍ୟତା କ୍ରମଶଃ ଭାରତୀୟ ଜୀବନକୁ ଆଚ୍ଛନ୍ନ କରି ଯାଉଥିଲା । ନବ୍ୟ ଶିକ୍ଷିତ ଇଂରେଜୀ ଶିକ୍ଷାଦୀକ୍ଷାପ୍ରାପ୍ତ ଯୁବକଗଣ ଏ ଦେଶର ପରମ୍ପରା ଏବଂ ସଂସ୍କୃତିକୁ ଅବିଶ୍ୱାସ କରି ସମ୍ପୂର୍ଣ୍ଣ ଭାବରେ ବିଦେଶୀ ସଂସ୍କୃତିର ଆହରଣ ଓ ଅବଲମ୍ବନ କାମନା କରୁଥିଲେ । ରୀତିଯୁଗ ସାହିତ୍ୟର ସର୍ବଶେଷ କବିଗଣ ଗୋପାଳକୃଷ୍ଣ, ବନମାଳୀ, ସାମନ୍ତସିଂହାର; ଯଦୁମଣି ପ୍ରଭୃତିଙ୍କର ସାଙ୍ଗୀତିକ ସ୍ୱର ଜନଜୀବନ ପ୍ରାଣୀଙ୍କୁ ଝଙ୍କୃତ କରୁଥିଲେହେଁ କବିବର ରାଧାନାଥଙ୍କ ନେତୃତ୍ୱରେ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶରେ ଅନୁରଞ୍ଜିତ ନୂତନ ସାହିତ୍ୟର ଆବାହନୀ ହୋଇ ସାରିଥିଲା । ମଧୁସୂଦନ, ନନ୍ଦକିଶୋରବଳ ପ୍ରଭୃତି ଲେଖକ-ଗଣ ଏହି ନୂତନ ସାହିତ୍ୟିକ ଆଦର୍ଶର ଅନୁସରଣରେ ଲେଖନୀ ଚାଳନା କରୁଥିଲେ । ଏମାନେ ସମସ୍ତେ ଥିଲେ ଉଚ୍ଚଶିକ୍ଷିତ ଏବଂ

Digitized by srujanika@gmail.com

ସମାଜରେ ଧନିକଶ୍ରେଣୀ ଜୀବନରେ ପ୍ରତିଷ୍ଠିତ । ପାଶ୍ଚାତ୍ୟ ଭାବଧାରାର ସମନ୍ୱୟ ଫଳରେ ଏକ ଦାରୁଣ ମାନସିକ ସଂଘର୍ଷର ମଧ୍ୟରେ ଦେଶର ସାଧାରଣ ଜୀବନ ଗତି କରୁଥିଲା । କ୍ରମଶଃ ପ୍ରାଚୀନ ମୂଲ୍ୟବୋଧ ହ୍ରାସ ହୋଇ ପାଶ୍ଚାତ୍ୟ ଦେଶର ଆଦର୍ଶ ଓ ମୂଲ୍ୟବୋଧ ଅନୁସୃତ ହେଲା । ତାହା ପୁଣି ଏ ଦେଶର ମାନଦଣ୍ଡ ଅନୁସାରେ ଥିଲା ସମ୍ପୂର୍ଣ୍ଣ ଭାବରେ ଅନୈତିକ ଏବଂ ଅସାମାଜିକ । ତେଣୁ ସେକାଳର ବହୁ ଚିନ୍ତାଶୀଳ ବ୍ୟକ୍ତି ଏଥିପାଇଁ ବିଚଳିତ ହୋଇ ଏକ ବଳିଷ୍ଠ ମୂଲ୍ୟବୋଧ କାମନା କରୁଥିଲେ । ଏହି ଆଦର୍ଶର ଅନୁରୋଧରେ ସମ୍ବଲପୁରର ଅଖ୍ୟାତ ଅଞ୍ଚଳରେ ଅଜଣା ପରିବାରରେ ଜନ୍ମଗ୍ରହଣ କରିଥିବା ଗଙ୍ଗାଧର ଲେଖିଲେ ତପସ୍ୱିନୀ, ପ୍ରଣୟବଲ୍ଲରୀ, କୀଚକ ବଧ, ଅହଲ୍ୟାସ୍ତବ, ଇନ୍ଦୁମତୀ, ଉତ୍କଳଲକ୍ଷ୍ମୀ, ମହିମା, କବିତା କଲ୍ଲୋଳ, ଅର୍ଘ୍ୟ ଥାଳି ପ୍ରଭୃତି ।

କବି ଗଙ୍ଗାଧର ପ୍ରଥମେ ପ୍ରାଚୀନ ରୀତିରେ କାବ୍ୟ ରଚନା କରିଥିଲେ । ସେହି ପ୍ରାଥମିକ କାଳର ରଚନାମାନଙ୍କ ମଧ୍ୟରେ 'ରସ-ରତ୍ନାକର' ପ୍ରଧାନ । ପ୍ରାଚୀନ ଓଡ଼ିଆ କାବ୍ୟକାରଗଣ ନିଜ ନିଜ ରଚନାରେ ଅକ୍ଷରର ଇନ୍ଦ୍ରଜାଲ ସୃଷ୍ଟି କରି ନିଜର ଶବ୍ଦ-ପାଣ୍ଡିତ୍ୟ ଏବଂ କଳ୍ପନା-ବିଳାସର ପରିଚୟ ଦେଇ ଯାଇଅଛନ୍ତି । ଗଙ୍ଗାଧର ଥିଲେ ସେହି ଆଦର୍ଶର ପଥିକ । ତେଣୁ 'ରସକଲ୍ଲୋଳ' 'ବୈଦେହୀଶ ବିଳାସ'ର ଲେଖକ ଯଥାକ୍ରମେ ରଚନାର ପ୍ରଥମ ଚରଣରେ 'କ' ଏବଂ 'ବ' ଅକ୍ଷରର ସଂଯୋଗ କରି ବିଶାଳ କାବ୍ୟ-ସୌଧ ନିର୍ମାଣ କରିପାରି ଗଙ୍ଗାଧର ତାଙ୍କର ନିଜସ୍ୱ ରସ-ରତ୍ନାକରରେ ଆଦ୍ୟ-ପ୍ରାନ୍ତ 'ର' ଅକ୍ଷରର ବ୍ୟବହାର କରିଥିଲେ । ଉଦାହରଣ ସ୍ୱରୂପ:—

Digitized by srujanika@gmail.com

ରଙ୍ଗଣୀ ନବମାଳିକା ମଲ୍ଲୀ ମାଧବୀ ଯୂଥିକା
ବିବିଧ କୁସୁମବର୍ଣ୍ଣ ବଲ୍ଲୀ ସୁନ୍ଦର
ରସଗ୍ରାହୀ ମଧୁକର ବସିଣ ପୁଷ୍ପ ଉପର
ଗୁଣୁଗୁଣୁ ସ୍ୱନ କରେ ଅତି ମଧୁର ।
ରସାଳ ଫଳରେ ସୁଭର
ବିଶାଳ ପାଦପେ ନମ୍ର କି ବୁଧ ନର ।

ଗଙ୍ଗାଧରଙ୍କର ପ୍ରତିଭା କର୍ମବିକାଶ ଧର୍ମୀ । ତାହା ଅନୁକୂଳ ପରିସ୍ଥିତି ପାଇଁ ଅପେକ୍ଷା କରିନାହିଁ । ପ୍ରତିକୂଳ ପରିବେଶ ମଧ୍ୟରେ ସଂଗ୍ରାମ କରି କରି ତାହା ସଫଳତାର ସହିତ ଅଗ୍ରସର ହୋଇଅଛି । ଏ ସମ୍ପର୍କରେ କବି ରାଧାନାଥ ଅଥବା ମଧୁସୂଦନଙ୍କ କାବ୍ୟାବଳୀ ଆଲୋଚନା କଲେ ପ୍ରମାଣିତ ହୋଇପାରିବ । ପାର୍ବତୀ, ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା ପ୍ରଭୃତି କାବ୍ୟଗୁଡ଼ିକରେ ସମାନ କବିଧର୍ମ ଏବଂ ସମବ୍ୟକ୍ତିତ୍ୱର ପ୍ରତିଧ୍ୱନି ଅନୁଭୂତ ହେଉଅଛି । ମାତ୍ର ଏ କ୍ଷେତ୍ରରେ ଗଙ୍ଗାଧର ଏକ ବ୍ୟତିକ୍ରମ ବୋଲି ସ୍ୱୀକାର କରିବାକୁ ହେବ । କାରଣ 'ଅହଲ୍ୟାସ୍ତବ'ରେ ଯେଉଁ ଗଙ୍ଗାଧରଙ୍କୁ ଆମେ ଦେଖୁ, ଇନ୍ଦୁମତୀ ବେଳକୁ ସେ ବଦଳିବାରେ ଲାଗିଛନ୍ତି । ସେହି ପ୍ରତିଭାର କ୍ରମବର୍ଦ୍ଧମାନ ଆତ୍ମିକ-ସ୍ୱର କୀଚକ ବଧରେ ରୂପାୟିତ ହୋଇ ବିଭିନ୍ନ କାବ୍ୟକବିତାର ସୋପାନ ଅତିକ୍ରମକରି ପ୍ରଣୟବଲ୍ଲରୀ ଏବଂ ତପସ୍ୱିନୀରେ ପୂର୍ଣ୍ଣତା ଲାଭ କରିଅଛି । ତେଣୁ 'ଇନ୍ଦୁମତୀ'ର କିଶୋର-କବି-ପୁରୁଷ ତପସ୍ୱିନୀ କାବ୍ୟରେ ଯୌବନରେ ପଦାର୍ପଣ କରି ସମ୍ପୂର୍ଣ୍ଣଭାବରେ ପ୍ରାଣ-ପ୍ରତିଷ୍ଠିତ । ଏହାହିଁ ଅଟଇ କବିପ୍ରତିଭାର ପରିଚୟ । 'ଇନ୍ଦୁମତୀ' କାବ୍ୟ ପାଠକରି ସେକାଳର 'ପ୍ରଜାବନ୍ଧୁ' ନାମକ ପତ୍ରିକାରେ ଉତ୍କଳର ବିଖ୍ୟାତ କବି ନନ୍ଦକିଶୋର ବଳ ଲେଖିଥିଲେ—

Digitized by srujanika@gmail.com

"ଲେଡ଼େନାକ୍ସି ଦେଖିବାକୁ ମୁଁ ତୁମ୍ଭ ମୂରତି
ଦେଖି କାଳେ ଛୁଟିଯିବ ମାୟା ଚିତ୍ତ ପ୍ରତି ।
ଗଢ଼ିଅଛୁ ଇନ୍ଦ୍ରମଣି କାବ୍ୟ କେତେଥର
ସେଥିରେ ପରିଚୟ ତୁମ୍ଭର ମୋହର ।

× × × ×

ଶୁଣିଅଛୁ ଦରିଦ୍ରତା କୁଠାର ଆଘାତ
ସହି କଷ୍ଟେ କବି ତୁମ୍ଭେ କର ଦିନପାତ ।

× × × ×

ଭିକ୍ଷୁକ ସଙ୍ଗରେ ନୃପ ମୁକୁଟ ମଣ୍ଡିତ
କାଳବଳେ ହେବେ ସର୍ବେ ଭସ୍ମ ଅନ୍ତର୍ହିତ
କିନ୍ତୁ ତୁମେ ହୀନ କବି ରହିବ ଜୀବିତ
ଯେତେଦିନ ଥିବ ଭବେ ଓଡ଼ିଆ ସାହିତ୍ୟ ।"

କବି ଗଙ୍ଗାଧର ଚୈତ୍ରମାସ ଅମାବାସ୍ୟା ଦିନ ୧୯୨୪ ଖ୍ରୀଷ୍ଟାବ୍ଦ ଏପ୍ରିଲ ୨୪ ତାରିଖରେ ୬୨ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ ।

---

Digitized by srujanika@gmail.com

# ଗଙ୍ଗାଧରଙ୍କ ପ୍ରକୃତି ଚିତ୍ରଣ

କବି ଚିରକାଳ ସୁନ୍ଦରର ପୂଜାରୀ । ଯାହା ସତ୍ୟ, ଶିବ ଓ ସୁନ୍ଦର, ତାହା କବିର ଲେଖନୀରେ ରୂପାୟିତ ହୁଏ । ସାହିତ୍ୟ-କାନନରେ ପ୍ରକୃତି-ସଂସାରର ବିଚିତ୍ର ରୂପଶୋଭା ଅନୁଧ୍ୟାନକରି ପାଠକ ଚିରକାଳ ମୁଗ୍ଧ ହୋଇଆସିଛି । ମାତ୍ର ପ୍ରକୃତି-ସଂସାର ପ୍ରତି କାବ୍ୟିକ-ଦୃଷ୍ଟିକୋଣ ସର୍ବତ୍ର ଏବଂ ସବୁକାଳରେ ସମାନ ନୁହେଁ । ରୀତିଯୁଗର କବିମାନେ ନାନାସ୍ଥାନରେ ପ୍ରସଙ୍ଗୋକ୍ତ ଭାବରେ ଅଥବା କାବ୍ୟାଳଙ୍କାର ଆଦର୍ଶରେ ପ୍ରକୃତି ବର୍ଣ୍ଣନା କରିଥାଆନ୍ତି । ତନ୍ମଧ୍ୟରେ ଉପବନ ବର୍ଣ୍ଣନା, ସନ୍ଧ୍ୟା ଏବଂ ପ୍ରଭାତ ବର୍ଣ୍ଣନା, ବସନ୍ତ ପୂର୍ଣ୍ଣଚନ୍ଦ୍ରର ବର୍ଣ୍ଣନା ଅଥବା କେଳି ସରୋବରର ବର୍ଣ୍ଣନା ପ୍ରଧାନ । ଏହି ବର୍ଣ୍ଣନା ମାଧ୍ୟମରେ ଅଧିକାଂଶ ସମୟରେ ପ୍ରକୃତିର ରୂପଶୋଭା ଅପେକ୍ଷା ପାଠକ ଅଧିକ ମୁଗ୍ଧ ହୁଏ କବିଙ୍କ ଏବଂ ଆଳଙ୍କାରିକ ଛଟାରେ । ପୁନଶ୍ଚ ପ୍ରକୃତି ବର୍ଣ୍ଣନାର ଗତାନୁଗତିକତା ପାଠକର ପ୍ରାଣରେ ବୈଚିତ୍ର୍ୟ ସୃଷ୍ଟି କରିପାରେ ନାହିଁ ।

କବି ରାଧାନାଥ ଏହି ପରମ୍ପରା ଭଙ୍ଗକରି ପାଶ୍ଚାତ୍ୟ ରୋମାଣ୍ଟିକ କବିମାନଙ୍କ ଆଦର୍ଶରେ ଓଡ଼ିଆ ସାହିତ୍ୟରେ ପ୍ରକୃତିର ଏକ ନୂତନ ବ୍ୟକ୍ତିତ୍ୱର ପ୍ରତିଷ୍ଠା କଲେ । ତାଙ୍କ ଲେଖନୀରେ ଶୋଭାସମ୍ପଦଶାଳୀ ଅମର-ଭୁବନ ଓଡ଼ିଶାର ରମଣୀୟ ପ୍ରକୃତି ଜୀବନ୍ତ ହୋଇ ଉଠିଲା । ଓଡ଼ିଶାର ପାହାଡ଼, ପର୍ବତ, ନଦୀ, କାନନ, କନ୍ଦର, ଉପତ୍ୟକା ପ୍ରଭୃତି ନୂତନ ମର୍ଯ୍ୟାଦା ଲାଭକରି ସାହିତ୍ୟ-ସଂସାରରେ ରୂପାୟିତ ହେଲେ । ପ୍ରକୃତି କେବଳ ତରୁ ଲତା, ଫଳ ଫୁଲ, ବଣପାହାଡ଼ର ସମାହାରକୁ ବୁଝାଇଲା ନାହିଁ—ପ୍ରକୃତି

Digitized by srujanika@gmail.com

ହେଲେ ମାନବ ସମାଜର ପରମବନ୍ଧୁ ଓ ଦ୍ରଷ୍ଟା । ପ୍ରକୃତ ସଂସାରର ବାହ୍ୟରୂପରେ କବି କେବଳ ମୁଗ୍ଧ ହୋଇ ବର୍ଣ୍ଣନା କଲାନାହିଁ, ସେ ତାହାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟରେ ମୁଗ୍ଧ ହେଲେ । ସେ ମନେ କଲେ, ପ୍ରକୃତି ଜଡ଼ ଏବଂ ଅଥର୍ବ ନୁହେ ଅଥବା ରୂପରସ-ଗନ୍ଧର ସମାହାର ନୁହେ, ପ୍ରକୃତି ଚଳନଶୀଳ ଏବଂ ଜୀବନ୍ତ । ମନୁଷ୍ୟର ଅନ୍ତରପରି ପ୍ରକୃତି ମଧ୍ୟ ଅନୁଭବ କରେ, ସୁଖଦୁଃଖରେ ଧାରୀ ହୁଏ । ସହାନୁଭୂତି ଏବଂ ସମବେଦନାରେ ପ୍ରକୃତିର ପ୍ରାଣ ଆନ୍ଦୋଳିତ ହୁଏ । ଏ କ୍ଷେତ୍ରରେ ରାଧାନାଥଙ୍କ ଅପେକ୍ଷା କବି ଗଙ୍ଗାଧର ଅଧିକ ସଫଳତା ଅର୍ଜନ କରିଛନ୍ତି । ଗଙ୍ଗାଧରଙ୍କ ପ୍ରକୃତି ଏହି କାରଣରୁ ପାଠକର ସଖୀ ଭାବରେ ଦଣ୍ଡାୟମାନ । କବି ଗଙ୍ଗାଧର ପ୍ରକୃତି ବର୍ଣ୍ଣନାରେ କବି କାଳିଦାସଙ୍କ ପଦାଙ୍କ ଅନୁସରଣ କରିଥିବା ଜଣାଯାଏ ।

କବି ଗଙ୍ଗାଧର ତପସ୍ୱିନୀ କାବ୍ୟରେ ଲକ୍ଷ୍ମଣଙ୍କଦ୍ୱାରା ସୀତାଙ୍କର ନିର୍ବାସନ ବିଷୟଟି ଅତିଶୟ କରୁଣ-ମଧୁର ଭାବରେ ବର୍ଣ୍ଣନା କରିଛନ୍ତି । ସୀତାଙ୍କ ଦୁଃଖରେ କାତର ହୋଇ ସମଗ୍ର ପ୍ରକୃତି ଯେପରି ବିଚଳିତ ଭାବ ପ୍ରଦର୍ଶନ କରିଅଛି, ତାହାର ଇୟତ୍ତା ନାହିଁ । ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"ସୀତାଙ୍କ ରୋଦନେ ଗତି ସ୍ତମ୍ଭିଲା ବାତର
ଜଳସ୍ଥଳ ଯେହ୍ନେ ହେଲା ନିସର୍ଗ କାତର
ସ୍ତମ୍ଭିଗଲା ଜାହ୍ନବୀର ତରଙ୍ଗ ଆବଳୀ
ବନ୍ଦ ହୋଇଗଲା ବନେ ବିହଙ୍ଗ କାକଳୀ
ନ ହଲିଲା ପାଦପର ଗୋଟିଏ ପତର

× × × ×

Digitized by srujanika@gmail.com

ଡାଳେ ଡାଳେ ବସି ପକ୍ଷୀ ପାଡ଼ିଲେ ଶ୍ରବଣ
ଛାଳେ ଛାଳେ ପ୍ରାଣେ ଭରି ଶୋକ ପ୍ରସ୍ରବଣ
ମୃଗଶିଶୁ ଜନନୀର ସ୍ତନ ମୁଖେ ଧରି
ନିଶ୍ଚଳେ ରହିଲା କ୍ଷୀର ଶୋଷଣ ନ କରି ।"

ବର୍ଣ୍ଣନାର ଏହି ଶୈଳୀଟି କବି ଅବିକଳ କାଳିଦାସଙ୍କ ବର୍ଣ୍ଣନାରୁ ଗ୍ରହଣ କରିଥିଲେ ପରି ମନେ ହୋଇଥାଏ । ମହାକବି କାଳିଦାସ ସୀତାଙ୍କର ରୋଦନରେ ବିଚଳିତ ପ୍ରକୃତିର ବର୍ଣ୍ଣନା ଏହିପରି ଦେଇଛନ୍ତି—

"ନୃତ୍ୟଂ ମୟୂରାଃ କୁସୁମାନି ବୃକ୍ଷା ଦର୍ଭାନୁପାତ୍ତାନ୍ ବିଜହୁ ର୍ହରିଣ୍ୟଃ
ତସ୍ୟାଃ ପ୍ରପନ୍ନେ ସମଦୁଃଖ ଭାବମତ୍ୟନ୍ତ ମାସୀଦ୍ରୁଦିତଂ ବନେଽପି ।'

ସୀତାଙ୍କର ଦୁଃଖରେ ଜଗତର ପ୍ରତ୍ୟେକ କେନ୍ଦ୍ରରେ ଦୁଃଖାନୁଭୂତିର ଉଦ୍ରେକ ହେଲା" । ଉଦ୍ଭିଦଜଗତଠାରୁ ପ୍ରାଣୀ-ଜଗତ ପର୍ଯ୍ୟନ୍ତ କେହି ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । ସୀତାଙ୍କର ଆଗମନର ଅବ୍ୟବହିତ ପୂର୍ବରୁ ମୟୂରମାନେ ନୃତ୍ୟକରି ଆନନ୍ଦ ଅନୁଭବ କରୁଥିଲେ । ମାତ୍ର ସୀତାଙ୍କର କ୍ରନ୍ଦନଧ୍ୱନି ସେମାନଙ୍କର କର୍ଣ୍ଣକୁହରରେ ପ୍ରବେଶ କରିବା ମାତ୍ରକେ ସେମାନେ ନୃତ୍ୟ ପରିତ୍ୟାଗ କରି ସ୍ତବ୍ଧ ହୋଇ ଠିଆ ହେଲେ । କାନନ ମଧ୍ୟରେ କେତେ ପ୍ରକାରର ସୁବାସିତ ପୁଷ୍ପର ସୌରଭ ସମଗ୍ର ପରିବେଶକୁ ଆମୋଦିତ କରି ରଖିଥିଲା । ସୀତାଙ୍କ ଦୁଃଖ ସହି ନପାରି ବୃକ୍ଷମାନଙ୍କରୁ ପୁଷ୍ପମାନେ ଝଡ଼ି ପଡ଼ିଲେ । ଶ୍ୟାମଳ ପ୍ରାନ୍ତର ମଧ୍ୟରେ ହରିଣମାନେ ଭ୍ରମଣ କରୁ କରୁ କୁଶଦାସ ଭୋଜନକରି ତୃପ୍ତି ଲାଭ କରୁଥିଲେ । ମାତ୍ର ସୀତାଙ୍କର କ୍ରନ୍ଦନଧ୍ୱନି ସେମାନଙ୍କୁ ବିଚଳିତ କରିଦେଲା । ତେଣୁ ସେମାନେ ଆଉ କୁଶ ଭକ୍ଷଣ କଲେନାହିଁ । ବଣର ଚତୁର୍ଦ୍ଦିଗରେ ରୋଦନ ଧ୍ୱନି ଶୁଣାଗଲା ।

Digitized by srujanika@gmail.com

ନେମଦ୍ରଗଡ଼ୁ ପାଶ୍ଚାତ୍ୟ ସଂସାରରେ ପ୍ରକୃତିର ଏହି ବ୍ୟକ୍ତିତ୍ୱ-ବୋଧର ପରିଚୟ ସଦନ୍ତ ଦେଖିବାକୁ ହୋଇଥାଏ । ତାଙ୍କର ପ୍ରକୃତି ସଂବେଦନଶୀଳ । ସେ ସଖୀ ପରି ସୁଖ ଦୁଃଖର ସାଥୀ, ଜନନୀ ପରି ପାଳନ-କାରିଣୀ, ସେ ପୁଣି ବନ୍ଧୁ ଓ ଧାତ୍ରୀ । ମାନବର ଅନ୍ତଃପ୍ରକୃତି ସଙ୍ଗେ ମେହେରଙ୍କର ବହିଃପ୍ରକୃତିର ନିବିଡ଼ ସଂଯୋଗ ଅନୁଭବ କରାଯାଇ ପାରେ । କବିତା କଲ୍ଲୋଳରେ 'ଚନ୍ଦ୍ରଭଜନୀ'ର ବର୍ଣ୍ଣନା ଦେବାକୁ ଯାଇ କବି ଲେଖିଅଛନ୍ତି—

ସେ ଶୋଭାରେ ଉଲ୍ଲସିଲା ପାଷାଣ ହୃଦୟ
ଜଳାଶୟେ ଉଲ୍ଲସିଲା କୁମୁଦ କାନନ
ଧରାଧରେ ଉଲ୍ଲସିଲା ଔଷଧି ନିଚୟ
ଗଗନେ ଉଲ୍ଲାସମୟ ଚକୋର ଗାୟନ
ଜନପଦେ ପୁରେ ପୁରେ ପ୍ରମୋଦ ଉଲ୍ଲାସ
ଉଲ୍ଲସିତ ଦେବାଳୟ ଶଙ୍ଖ ଘଣ୍ଟା ସ୍ୱନେ
ହୃଦୟେ ହୃଦୟେ ମହା ଉଲ୍ଲାସ ବିକାଶ ।
ଉଲ୍ଲାସେ ଖେଳନ୍ତି ଠାବେଠାବେ ଶିଶୁଗଣ
ଉଲ୍ଲାସେ ନେଇଛୁ କରି ବଶ୍ୟ ଆକାର
ପ୍ରବଳର ଆଧିପତ୍ୟ ସର୍ବତଃ ସ୍ୱୀକାର ।

ରାଧାନାଥ ଯୁଗରେ ଜନ୍ମ ଗ୍ରହଣ କରିଥିଲେହେଁ କବି ମେହେର ପ୍ରକୃତି ବର୍ଣ୍ଣନାରେ ସ୍ୱକୀୟ ମୌଳିକ ପ୍ରତିଭାର ପରିଚୟ ଦେଇ ଯାଇଅଛନ୍ତି । ମେହେର କବି ରାଧାନାଥଙ୍କ ପରି ସୌନ୍ଦର୍ଯ୍ୟର ପୂଜାରୀ ହୋଇଲେହେଁ ତାଙ୍କର ବର୍ଣ୍ଣନାରେ ବସ୍ତୁର ପ୍ରାଧାନ୍ୟ ପରି-ଲକ୍ଷିତ ହୁଏ ନାହିଁ । ବସ୍ତୁଗତ-ସୌନ୍ଦର୍ଯ୍ୟ କେବଳ ମାନବର ଅନ୍ତର୍ଭାବନାର ରୂପାୟନ ପାଇଁ ସାହାଯ୍ୟ କରିଥାଏ ମାତ୍ର । ତେଣୁ

Digitized by srujanika@gmail.com

ପ୍ରଣୟୀବଲ୍ଲରୀରେ ଅତି ନିର୍ମମ ଭାବରେ ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ପରିତ୍ୟାଗ କରିବା ପରେ ପଶ୍ଚାତ୍ ଅନୁତାପ କରିଛନ୍ତି । ସେହି ଭାବନାକୁ କବିବର କଳ୍ପନା ପ୍ରକୃତି-ସଂସାରରୁ ଉପମା ସଂଗ୍ରହ କରି ଅତି ମନୋଜ୍ଞ ଭାବରେ ପରିବେଷଣ କରିଅଛନ୍ତି । ଯେମନ୍ତେ କହି ଚାଲିଛନ୍ତି —

‘ବାସନ୍ତୀ ହେମନ୍ତ- ବିରାଗିଣୀ ହୋଇ
ବର୍ଷୁଥିବ ଅଶ୍ରୁକଣ
ନୟନ ମୋହର ବାରି ବରଷୁଛି
ହୋଇ ପ୍ରାବୃଟର ଘନ ।
ତା ଶୋକ-କ୍ରନ୍ଦନ ମୋ ଦୁଃଖ ଦୁର୍ଦ୍ଦିନ
ପ୍ରାବଲ୍ୟ ହେବ କି ନାଶ
ମିଳନ-ଶରଦେ ସୁଖେନ୍ଦୁ-ଶୋଭିତ
ହେବ ସ୍ୱଚ୍ଛ ଭାଗ୍ୟାକାଶ । (ପ୍ରଣୟୀବଲ୍ଲରୀ)

କୀଚକ ବଧରେ ସନ୍ଧ୍ୟା ଓ ବସନ୍ତ ବର୍ଣ୍ଣନାରେ କବିଙ୍କର ପ୍ରକୃଷ୍ଟ ବର୍ଣ୍ଣନାର ଶୈଳୀ ଅତ୍ୟନ୍ତ ସାର୍ଥକ ହୋଇଅଛି । ବିରାଟ ନଗର ବର୍ଣ୍ଣନାର ଐଶ୍ୱର୍ଯ୍ୟ ଲାବଣ୍ୟବତୀ କାବ୍ୟର ସିଂହଳର ବର୍ଣ୍ଣନାକୁ ସ୍ମରଣ କରାଇ ଦିଏ । କବିଙ୍କର ଅନ୍ତର୍ଦୃଷ୍ଟି ଅତ୍ୟନ୍ତ ଚମତ୍କାର । ଅତି ସାମାନ୍ୟ ବସ୍ତୁ ମଧ୍ୟ କବି କଳ୍ପନାରେ ଅସାଧାରଣ ଭାବରେ ପ୍ରତିଭାତ ହୁଏ । ଯେଉଁ ବିରାଟ ନଗରର ଚତୁର୍ଦ୍ଦିଗରେ ଯେଉଁ ଘଞ୍ଚ ଅରଣ୍ୟ ବିଦ୍ୟମାନ, ତାହାର ମଧ୍ୟରେ ସୂର୍ଯ୍ୟରଶ୍ମିର ସଂପାତ ଅପୂର୍ବ ହୋଇ ଉଠେ । ସେହି ଦୃଶ୍ୟକୁ କବି ବର୍ଣ୍ଣନା କରିଛନ୍ତି —

Digitized by srujanika@gmail.com

"ଘନ ତରୁ ରନ୍ଧ୍ର, ଭେଦ ପ୍ରଭାକର-କର
କଟୂର୍ତ୍ତିତ ହୋଇ ଗୁଳ୍ମ ଭୂମିରେ ସୁନ୍ଦର
ଅନନ୍ତ ମସ୍ତକେ ଯେହ୍ନେ ମଣି ସମୁଜ୍ଜ୍ୱଳ
ଯମୁନା ବକ୍ଷରେ କବା ଶ୍ୱେତ-ଶତଦଳ ।
ରଜନୀ ବଗ୍ରହେ କବା ବକଶିତ ମଲ୍ଲୀ
କବା ପାପି-ଜୀବନର ପୂର୍ବ ପୁଣ୍ୟାବଳୀ
କବା ଊର୍ଦ୍ଧ୍ୱବାହୁ ଯୋଗୀ ପାଦପ ଗଣର ।

ଜୀଚକ ବଧ କାବ୍ୟର ତୃତୀୟ ସର୍ଗରେ ପ୍ରଦତ୍ତ ସନ୍ଧ୍ୟା ବର୍ଣ୍ଣନା ପାଠକଲେ ଗଙ୍ଗାଧରଙ୍କ କଳ୍ପନା ବଳାସ ଏବଂ କବତ୍ୱର ସମ୍ୟକ୍ ପରଚୟ ମିଳଥାଏ । ଉପମା-ଗର୍ଭିକ ବର୍ଣ୍ଣନା ମାଧ୍ୟମରେ କବ ସନ୍ଧ୍ୟା କାଳର ମନୋଜ୍ଞ ଚିତ୍ର ପ୍ରଦାନ କର ଅଛନ୍ତ । ଏଥିରେ ପାଠକର ମନରେ ଏକ ମନୋହର ଚିତ୍ର-କଳ୍ପନା ସୃଷ୍ଟି ହୋଇ-ଥାଏ । ସମସ୍ତ ପ୍ରକୃତ ସଂସାରରେ ସନ୍ଧ୍ୟାର ଆଗମନ ଯେଉଁ ପୁଳକ ଏବଂ ଉଦ୍‌ବେଳନ ସୃଷ୍ଟି କଲା, ତାହା ଲେଖକଙ୍କ ଲେଖାରେ ଜୀବନ୍ତ ହୋଇଅଛୁ । ଗଙ୍ଗାଧର ଲେଖିଛନ୍ତ—

"ଦନ ଅଭନୟ ଅବସାନେ ହେଲ
ସନ୍ଧ୍ୟା ଯବନିକା ପାତ
ଦବସ ବେଶକୁ ଛନ୍ନ ଭନ୍ନ କର
ବଭାବରୀ ସମାଗତ ।
ପ୍ରକୃତ ଯନ୍ତ୍ରରେ ଖଣ୍ଡ ଖଣ୍ଡ କର
ପ୍ରଭାକର ମହାମଣି
ନଜ ଅବୟବ ଅଳଂକୃତ କଲ
ଗଢ଼ି ତାର ନଶାମଣି ।

Digitized by srujanika@gmail.com

ଜୋସ୍ନା-ଉଦ୍ଭାସିତ ତାରକୃତ ମାଳ-
ବହ୍ନାସ୍ଥେ ସୁଧାକର,
କ୍ଷୀରାର୍ଣ୍ଣବ-ଶେତ-ମଣି ମଧ୍ୟେ ବସ୍ତୁ-
କୌସ୍ତୁଭବତ ସୁନ୍ଦର ।

ଘନୁ ଗଭସ୍ତିକ ଆଉଟି ତାଳକ
ତ୍ରଧାପ-ପ୍ରସୂନ ପୁଞ୍ଜେ,
ଚକ୍ରବାକ-ହୃଦ-ସୁଖ ରତ୍ନ ନେଲ
ଚକୋରକୁ ଦେବା ପାଞ୍ଚେ ।

ପଦ୍ମବନୁ ଲକ୍ଷ୍ମୀ-ଶିବରକୁ ନେଇ
ନିଷ୍କଳ ମଲ୍ଲିକା ବନେ,
ସୂର୍ଯ୍ୟ-ମୁଖୀ-ମୁଖ-ଲାବଣ୍ୟକୁ ଦେଲ
ନବ ମାଳକା ବଦନେ । (ଭୃଙ୍ଗାପୁସର୍ଗ)

ରୂପକାର ଗଙ୍ଗାଧର ବିଚିତ୍ରବର୍ଣ୍ଣୀ ପ୍ରକୃତ ସୁନ୍ଦରୀକୁ ଅଧିକ ସଜୀବ କରାଇ ଚିତ୍ରଣ କରିଅଛନ୍ତି । ସେଥିପାଇଁ ରାଧାନାଥଙ୍କ ଯୁଗରେ ଗଙ୍ଗାଧରଙ୍କ ପ୍ରକୃତି ସୁନ୍ଦରୀର ତୁଳନା ନାହିଁ ।

———

Digitized by srujanika@gmail.com

# କୀଚକ ବଧରେ ଚରିତ୍ରଚିତ୍ରଣ

## କୀଚକ

ମହାଭାରତର ସୁବିଖ୍ୟାତ ଚରିତ କବି ଗଙ୍ଗାଧରଙ୍କ କୀଚକ-ବଧ କାବ୍ୟର ନାୟକ । ଅଜ୍ଞାତ ବାସ କାଳରେ ପାଣ୍ଡବଗଣ ବିରାଟରାଜ ଗୃହରେ ଏକବର୍ଷକାଳ ଆତ୍ମଗୋପନ କରି ରହିଥିଲେ । ସେହିଠାରେ ପାଣ୍ଡବ ଘରଣୀ ଦ୍ରୌପଦୀ ସୈରିନ୍ଧ୍ରୀ ଭାବରେ ଅନ୍ତଃପୁରରେ ଆଶ୍ରୟ ଗ୍ରହଣ କରିଥିଲେ । ଏକଦା ରାଣୀ ସୁଦେଷ୍ଣାଙ୍କ ଗହଣରେ ସୁନ୍ଦରୀ ସୈରିନ୍ଧ୍ରୀଙ୍କୁ ଲକ୍ଷ୍ୟ କରି ବୀରକେଶ୍ରୀ କୀଚକ ବିଚଳିତ ହୋଇ ପଡ଼ିଥିଲେ । ସେ ନିଜର ଦାସୀଠାରୁ ସୈରିନ୍ଧ୍ରୀଙ୍କର ପରିଚୟ ଲାଭ କରି ତାହାଙ୍କୁ ଲାଭ କରିବା ପାଇଁ ବ୍ୟାକୁଳତା ପ୍ରକାଶ କଲେ । ତେଣୁ ଦାସୀ ସୈରିନ୍ଧ୍ରୀ ନିକଟରେ କୀଚକର ଶୌର୍ଯ୍ୟ ବୀର୍ଯ୍ୟ ବର୍ଣ୍ଣନା କରି ଯାହା କହିଥିଲେ, ତାହା କବି କଳ୍ପନାରେ ଏହିପରି ସ୍ଥାନ ପାଇଅଛି—

"ଯଦି ଇଚ୍ଛା କରୁ ଗୁଣାଢ୍ୟମାନିନି
ନାୟକ ତୋ ଅନୁରୂପ,
ସୁଦେଷ୍ଣା ସୋଦର କୀଚକ ଅଛନ୍ତି
ଦ୍ୱିତୀୟ ବିରାଟ-ଭୂପ ।
ବଳିଷ୍ଠ କୀଚକ ସମ୍ପଦ-ଗବୀର
ଶୃଙ୍ଗ ଦେଇଛନ୍ତି ଧରି,
ବିରାଟ ନରେଶ ଆନନ୍ଦରେ ଛନ୍ତି
ସୁଖେ କ୍ଷୀର ପାନ କରି !

Digitized by srujanika@gmail.com

ଏଣୁ ଏ ରାଜ୍ୟରେ କୀଚକ ପ୍ରଭାବ
ହୋଇଅଛି ପ୍ରଭାବନ୍ତ,
ରାଜା ପର ମାନ୍ୟ କରୁଛନ୍ତି ତାଙ୍କୁ
ନ ପ୍ରଜା କବା ମାନନ୍ତି ।"

ସେହି କାରଣରୁ ଓଡ଼ିଆରେ ପ୍ରବାଦ ରହିଅଛି—"କୀଚକ ବାହୁବଳେ ବିରାଟ ରାଜା ।" ଶକ୍ତିମାନ୍ କୀଚକର ବୁଦ୍ଧି ଏବଂ ରଣକୌଶଳ ଯୋଗୁ ବିରାଟବାହିନୀ ଅଜେୟ ହୋଇ ରହିଥିଲେ ଏବଂ ବିରାଟ ନରେଶ ନିରଙ୍କୁଶ ଭାବରେ ରାଜ୍ୟ ଶାସନ କରୁଥିଲେ । ତେଣୁ ବିରାଟ ରାଜ୍ୟରେ ରାଜାଙ୍କ ଅପେକ୍ଷା ଜନସାଧାରଣ ସେନାପତି କୀଚକଙ୍କୁ ଅଧିକ ଭୟ କରୁଥିଲେ । କୀଚକ ଥିଲେ ରାଜମହିଷୀଙ୍କର ଅତି ପ୍ରିୟ ଭାଇ । ତେଣୁ ତାଙ୍କର ପ୍ରତ୍ୟେକ ଇଚ୍ଛା କାର୍ଯ୍ୟରେ ପରିଣତ ହେଉଥିଲା । କୀଚକର ଅଭିଳାଷ ଚରିତାର୍ଥ ପାଇଁ ସମସ୍ତ ବିରାଟ ରାଜଶକ୍ତି ପ୍ରତ୍ୟେକ ମୁହୂର୍ତ୍ତରେ ଅପେକ୍ଷା କରି ରହିଥିଲେ । ତେଣୁ କବିଙ୍କ ଭାଷାରେ ଯଥାର୍ଥରେ କୁହାଯାଇଛି—

"କୀଚକ ଶ୍ରୀମୁଖ-କମଳରୁ ଆଜ୍ଞା ପାଖୁଡ଼ା ଝଡ଼ଇ ଯାହା,
ମତ୍ସେଶ୍ୱର ଛଡ଼ା-କୁସୁମ ପରାୟେ ନେଉଛନ୍ତି ତାହା ।
ସ୍ରୋତରୂପେ ବହି ବସେ ଯେଉଁ ଦିଗେ କୀଚକ ମନ-ଖିଆଲ,
ରାଜଶକ୍ତି ସେହି ଦିଗକୁ ସତ୍ୱର ଖୋଲି କରିଦିଏ ଖାଲ ।"

ତନେ ବିରାଟ ରାଣୀ ଦେବୀପୂଜା ଉଦ୍ଦେଶ୍ୟରେ ବହିର୍ଗତ ହେଲେ । ବିଭିନ୍ନ ବସ୍ତ୍ରାଳଙ୍କାରରେ ସୁସଜ୍ଜିତ ହୋଇ ପୁରନାରୀ-ମାନେ ରାଣୀଙ୍କର ସହଚାରିଣୀ ହେଲେ । ସେମାନଙ୍କ ମଧ୍ୟରେ

Digitized by srujanika@gmail.com

ଛଦ୍ମବେଶରେ ଦ୍ରୌପଦୀ ମଧ୍ୟ ଥିଲେ । ସେହି ସୁନ୍ଦରୀମାନଙ୍କୁ କବି କଳ୍ପନା-ନୟନରେ ଦର୍ଶନ କରି ଲେଖିଛନ୍ତି—

"ସୁନ୍ଦରୀ ସମାଜ ଦର୍ଶନେ ହୃଦ ଏ ଭାବ ପୋଷେ,
ପଶିଲା କି ଦୃଷ୍ଟି ପୟୋଧି-ପତି ରତନ କୋଷେ ।
କି ଅବା-ନୟନ-ରଞ୍ଜନ ଅପସରା ଭୁବନେ,
ଆତ୍ମା କରିଅଛି ପ୍ରବେଶ ଭ୍ରମୁ ଭ୍ରମୁ ସ୍ୱପନେ ।
ନୁହେ ରତ୍ନକୋଷ, ନୁହନ୍ତି ସ୍ୱର୍ ଅପ୍‌ସରାବ୍ରାତ,
କୀଚକ ମରଣସୂଚକ ଘୋର ଉଲ୍‌କାପାତ ।

ଅର୍ଥାତ୍ ଏମାନଙ୍କୁ ଦେଖିଲେ ସାଗରର ରତ୍ନରାଶି ଉପରେ ଦୃଷ୍ଟିପାତ ହେଲାପରି ବୋଧ ହେଉଥିଲା । କିନ୍ତୁ ପ୍ରକୃତରେ ଏ ମନୋରମ ଦୃଶ୍ୟ ସାଗରର ରତ୍ନଭଣ୍ଡାର କିମ୍ବା ସ୍ୱର୍ଗର ଅପ୍‌ସରା ନୁହଁ; ଦେଖିଲେ ମନେ ହେବ ସତେ ଯେପରିକି ଏହା କୀଚକର ମରଣସୂଚକ ଉଲ୍‌କାପାତ ।

ପ୍ରକୃତ ପକ୍ଷେ ଏହି ସୁନ୍ଦରୀ ଗହଣରେ ଦ୍ରୌପଦୀଙ୍କୁ ଦର୍ଶନ କରି କୀଚକ ଆକୃଷ୍ଟ ହୋଇ ନ ଥିଲେ ତାହାର ଅକାଳ ମୃତ୍ୟୁ ହୋଇ ନ ଥାନ୍ତା । ଦ୍ୱିତଳ ପ୍ରାସାଦରେ ବସି କୀଚକ ଏହି ସୁନ୍ଦରୀ-ସମାଜ ମଧ୍ୟରୁ ଦ୍ରୌପଦୀଙ୍କୁ ଲକ୍ଷ୍ୟ କରି ତାଙ୍କର ରୂପସୁଧା ପାନ କରିବାକୁ ଲାଗିଲା । କୀଚକର ନେତ୍ରରୂପକ ଭ୍ରମର ଆବସ୍ଥାର କଲା—

"ଭ୍ରମୁ ଭ୍ରମୁ ରସ ଲୋଲୁପ ତାର ନେତ୍ର-ଷଟ୍‌ପଦ,
ପାଇଲା ପାଞ୍ଚାଳୀ ବଦନ ନବପୁଷ୍ପ ସମ୍ପଦ ।
ଘୂର୍ଣ୍ଣି ଚମତ୍କାରେ ରହିଲା କ୍ଷଣେ ହୋଇ ସ୍ତମ୍ଭିତ,
ରୂପ-ମକରନ୍ଦ ପାନରେ କ୍ରମେ ହେଲା ମଜ୍ଜିତ ।

Digitized by srujanika@gmail.com

ସ୍ଵଚ୍ଛ ଚୁମ୍ବିଛୁ କମଳ ଚମ୍ପା ମାଧବୀ ମଲ୍ଲୀ
ନାହିଁତ କାହାର ମାଧୁରୀ ଏତେ କୁସୁମ ଭଳି ।
ବସିଛୁ ମାଳତୀ ଯୂଥିକା ନବମାଳିକା ଫୁଲେ,
ମନ କନ୍ଦୁନାହିଁ ଭୁଲିବା ପାଇଁ ଏ ପୁଷ୍ପ କୂଳେ ।

କୀଚକ ଦ୍ରୌପଦୀଙ୍କି ଦେଖି ସ୍ତମ୍ଭୀଭୂତ ହୋଇଗଲା । ସେ ମନେ କଲା, ଦ୍ରୌପଦୀଙ୍କ ସହିତ କୌଣସି ନାରୀ ତୁଳନୀୟ ହେବେ ନାହିଁ । ସେ ଜୀବନରେ ବହୁ ରମଣୀଙ୍କ ସମ୍ପର୍କରେ ଆସିଥିଲେହେଁ ଏପରି ନାରୀ-ରତ୍ନ ସେ କେଉଁଠାରେ ଦେଖି ନାହିଁ । ଫଳରେ ଦ୍ରୌପଦୀଙ୍କ ପ୍ରତି ସେ ଅତ୍ୟନ୍ତ ଆକୃଷ୍ଟ ହୋଇ ପଡ଼ିଲା ଏବଂ ଦ୍ରୌପଦୀଙ୍କ ଚିନ୍ତାରେ ତାହାର ବ୍ୟାକୁଳତା ବୃଦ୍ଧି ପାଇବାକୁ ଲାଗିଲା । କାମ ତୃଷ୍ଣାରେ ଅଧୀର ହୋଇ ସେ ଦ୍ରୌପଦୀଙ୍କ ପରିଚୟ ଜାଣିବା ପାଇଁ ଦାସୀର ଆଶ୍ରୟ ଗ୍ରହଣ କଲା । ଦାସୀଠାରୁ କୀଚକ ଜାଣିପାରିଲା ଯେ ଯେଉଁ ସୁନ୍ଦରୀଙ୍କ ରୂପାନଳରେ ସେ ଝାସ ଦେବା ପାଇଁ ଆଗ୍ରହୀ ହୋଇଅଛି, ସେ ନାରୀ ଅନ୍ତଃପୁରରେ ସୈରନ୍ଧ୍ରୀ ଭାବରେ ଜୀବନଯାପନ କରିଥାଏ ।

"କେ ତାର ଜନକ ଅଛି କି ନା ପତି
କାହିଁ ବା ପୂର୍ବ ନିବାସ,
କେଉଁ ଉଦ୍ଦେଶ୍ୟରେ ଏ ପୁରେ ଆଗତ
ତାହା ନୁହେଁ ସୁପ୍ରକାଶ ।"

କିନ୍ତୁ ସେତିକ ପରିଚୟ ଛଡ଼ା ଦାସୀ ଆଉ କିଛି ଜାଣିପାରି ନାହିଁ । ତେବେ ଦୁଷ୍ଟବୁଦ୍ଧି କୀଚକ ସୈରନ୍ଧ୍ରୀଙ୍କୁ ଲାଭ କରିବା ପାଇଁ ଉପାୟ ଚିନ୍ତା କରିବାକୁ ଲାଗିଲେ । ଲମ୍ପଟ ଏବଂ କାମାତୁର ଲୋକର ମାନଜ୍ଞାନ ରହେ ନାହିଁ । ଶକ୍ତିଶାଳୀ କୀଚକ ମଧ୍ୟ ନିଜର

Digitized by srujanika@gmail.com

ସ୍ୱାର୍ଥ ସାଧନ ପାଇଁ ସତ୍ୟ ଏବଂ ନ୍ୟାୟର ଅବମାନନା କରିବା ପାଇଁ କୁଣ୍ଠିତ ହେଉ ନାହିଁ । ତେଣୁ କୀଚକ କହୁଥିଲା—

"[illegible]ିରକାଲ ବୀର ବିବିଧ ଉପାୟେ ନାରୀକି କରିବ ବଶ,
ମୋ ବୀର ଗୌରବେ ଅତୁଳ ବିଭବେ ତା ପ୍ରୀତି ହେବ ଅବଶ୍ୟ ।

ନଳେ ବଳେ କଉଶଳେ ଦ୍ରୌପଦୀଙ୍କୁ କୀଚକର ଅନୁଗତ କରାଇ ଦେବା ପାଇଁ ଦାସୀ ପ୍ରତିଶ୍ରୁତ ହେଲା ଏବଂ ଦ୍ରୌପଦୀଙ୍କ ନିକଟରେ ପହଞ୍ଚି ବୀରଶ୍ରେଷ୍ଠ କୀଚକର ଗୁଣଗାନ କରିବାକୁ ଲାଗିଲା । ଦାସୀର ମତରେ କୀଚକ ବିରାଟ-ନଗରୀ ଭିତରେ ସେ ରାଜ୍ୟରେ ସମ୍ମାନିତ ଏବଂ ରାଣୀ ସୁଦେଷ୍ଣାଙ୍କର ସୋଦର ହୋଇ ଥିବାରୁ ତାହାର ପ୍ରଭାବ ଓ ଐଶ୍ୱର୍ଯ୍ୟ କଳନା କରି ହେବ ନାହିଁ । ଏଭଳି ବୀର ପୁରୁଷର ପ୍ରେମଲାଭ କରିବା ପାଇଁ କେଉଁ ନାରୀ ଅବା ଆଗ୍ରହୀ ନ ହେବ; କାରଣ ଜଗତ ହେଉଛି ଧନ ଓ କ୍ଷମତାର ଦାସ । ସେଥିପାଇଁ ଦାସୀ କୀଚକର ଐଶ୍ୱର୍ଯ୍ୟ ଏବଂ ପରାକ୍ରମର ବିପୁଳ ପରିଚୟ ପ୍ରଦାନ କଲେହେଁ ଦ୍ରୌପଦୀ ଥିଲେ ଅନନ୍ୟ-ସାଧାରଣ । ଦାସୀକୁ ଭର୍ତ୍ସନାବାଣୀ ଶୁଣାଇ ଦ୍ରୌପଦୀ ବିଦାୟ କରିଦେଲେ ଏବଂ କ୍ଷମତାର ଅପବ୍ୟବହାର କଲେ କୀଚକ ତାର କୁପରିଣତି ଲାଭ କରିବ ବୋଲି ସତର୍କ କରିଦେଲେ । ପ୍ରଥମ ପ୍ରଚେଷ୍ଟାରେ ଦାସୀ ବିଫଳ ହୋଇଥିଲେହେଁ ସେ ଥିଲା ଘୋର ଆଶାବାଦୀ । ତେଣୁ ରାଣୀ ସୁଦେଷ୍ଣାଙ୍କ ନିକଟରେ ପ୍ରିୟ ସୋଦରର ଦୁଃଖ କାହାଣୀ ବର୍ଣ୍ଣନା କରି ତାଙ୍କର ସାହାଯ୍ୟ ଭିକ୍ଷା କଲା । ସେ ବୁଝିଥିଲା ଯେ ସୁଦେଷ୍ଣାଙ୍କ ଆଦେଶରେ ଦ୍ରୌପଦୀ ଅବଶ୍ୟ କୀଚକକୁ ସାକ୍ଷାତ କରିବେ ଏବଂ ପ୍ରଥମ ଦର୍ଶନରେ ହିଁ କୀଚକ ପ୍ରତି ଆକୃଷ୍ଟ ହୋଇ ପଡ଼ିବେ । ତାର ଯୁକ୍ତି ଥିଲା—

Digitized by srujanika@gmail.com

"ଦର୍ଶନ ବିନା କାହିଁ ଫୁଟିଛି ପ୍ରୀତି,
ଦେଖୁଛ ନିତି ଭାନୁ-ପଦ୍ମ ରୀତି ।
ଭଜିବ ତୁମଙ୍କୁ ତା ପତିଙ୍କି ଛଳି
ଲତା ଲଳନା ପ୍ରୀତି ନହୁଏ କଳି ।"

ଭାଇ ପ୍ରତି ସ୍ନେହପରବଶ ହୋଇ ସୁଦେଷ୍ଣା ଦ୍ରୌପଦୀଙ୍କୁ କୀଚକ ନିକଟକୁ ପ୍ରେରଣ କଲେହେଁ ସେ ସତର୍କ କରି ଦେଇଥିଲେ ଯେ—

"କପଟ ଥିଲେ ଯାଇ ବୁଝାଇ କହ
ଏ ପାପେ ପରମାୟୁ ହୁଅଇ ଥୟ ।"

ରାଣୀଙ୍କ ଆଦେଶରେ କର୍ତ୍ତବ୍ୟର ଅନୁରୋଧରେ ହରିଙ୍କୁ ସ୍ମରଣ କରି ଦ୍ରୌପଦୀ କୀଚକର ପୁରକୁ ଗମନ କଲେ । ରାଣୀଙ୍କର ଧାରଣା ଥିଲା ଯେ ଦ୍ରୌପଦୀ କେବଳ କିଛି ପାନୀୟ ନେଇ କୀଚକ ନିକଟରେ ଥୋଇ ଦେବେ । କିନ୍ତୁ ପତିବ୍ରତା ସତୀ ନାରୀର ଅବମାନନା କଲେ ବିପଦ ଅବଶ୍ୟମ୍ଭାବୀ ।

କୀଚକ-ପୁରରେ ଦ୍ରୌପଦୀ ପ୍ରବେଶ କରନ୍ତେ କାମୁକ କୀଚକ ତାଙ୍କ ପ୍ରତି ଅବମାନନା କରିବା ଉଦ୍ଦେଶ୍ୟରେ ନାନା ଉପାୟ ଅବଲମ୍ବନ କଲା । ମାତ୍ର କୌଣସି ପ୍ରକାରେ ସେହି ଅସୁରମୁଖରୁ ଦ୍ରୌପଦୀ ପଳାୟନ କରି ରକ୍ଷା ପାଇଗଲେହେଁ ଭବିଷ୍ୟତ ବିପଦ ଆଶଙ୍କାରେ ବିଚଳିତ ହୋଇ ପଡ଼ିଲେ । ସେ ଜାଣିଥିଲେ ରାଜା ବିରାଟଙ୍କ ଆଗରେ କୀଚକ ବିରୁଦ୍ଧରେ ଅଭିଯୋଗ କରି ସେ ନ୍ୟାୟ ଲାଭ କରିବେ ନାହିଁ । ତଥାପି ତାଙ୍କର ନିକଟରେ ଛଦ୍ମବେଶରେ ଅବସ୍ଥାନ କରୁଥିବା ଯୁଧିଷ୍ଠିରଙ୍କୁ ଜଣାଇବା ପାଇଁ ସେ ରାଜାଙ୍କ ଦରବାରରେ ଉପସ୍ଥିତ ହେଲେ । ଯୁଧିଷ୍ଠିରଙ୍କ ଇଙ୍ଗିତରୁ ଯେ

Digitized by srujanika@gmail.com

ବୃଦ୍ଧିପାଇଲେ ଯେ ଏକମାତ୍ର ଭୀମସେନହିଁ ତାଙ୍କୁ ଏଭଳି ବିପଦରୁ ରକ୍ଷା କରି ପାରିବେ । ତେଣୁ ସୂପକାର ବେଶରେ ଥିବା ଦ୍ୱିତୀୟ ପାଣ୍ଡବ ଭୀମସେନଙ୍କୁ ଦ୍ରୌପଦୀ ପ୍ରାର୍ଥନା କଲେ । ପରିଶେଷରେ ଭୀମଙ୍କ ଆକ୍ରମଣ ଫଳରେ କାମୁକ କୀଚକ ଅକାଳରେ ମୃତ୍ୟୁବରଣ କଲା । କେବଳ ସେତିକି ନୁହେଁ, ତାହାର ପାପକର୍ମ ପାଇଁ ଅନେକତ ଭାଇ ମଧ୍ୟ ଭୀମ ଦ୍ୱାରା ନିହତ ହୋଇଥିଲେ ।

## ବିରାଟ-ରାଣୀ ସୁଦେଷ୍ଣା

ରାଣୀ ସୁଦେଷ୍ଣା ଅତ୍ୟନ୍ତ ଭାଗ୍ୟବତୀ । ଧନ, ଜନ, ରୂପ ଓ ବିଭବ, କୌଣସିଥିରେ ତାଙ୍କର ଅଭାବ ନ ଥିଲା । ବିରାଟ ରାଜ୍ୟର ରାଣୀ ଭାବରେ ସେ ଥିଲେ ସର୍ବଜନ-ପୂଜ୍ୟା । ମହାବଳଶାଳୀ ଏକଶତ ଭାଇଙ୍କ ମଧ୍ୟରେ ସେ ଥିଲେ ଅଳଅଳ କନ୍ୟା । ଭାଇମାନେ ଏକମାତ୍ର ଭଗିନୀକୁ ଅତ୍ୟନ୍ତ ସ୍ନେହ ଓ ଶ୍ରଦ୍ଧା କରୁଥିଲେ ଏବଂ ନିଜର ସମସ୍ତ ଶକ୍ତିର ବିନିମୟରେ ବିରାଟ ରାଜବଂଶର ଗୌରବ ଅକ୍ଷୁଣ୍ଣ ରଖିଥିଲେ ।

ରାଣୀ ସୁଦେଷ୍ଣା ଥିଲେ ଅତ୍ୟନ୍ତ ପୁଣ୍ୟଶୀଳା । ନିୟମିତ ଦେବୀ ଆରାଧନା କରି ସେ ରାଜା, ପ୍ରଜା ଏବଂ ରାଜ୍ୟର ମଙ୍ଗଳ କାମନା କରୁଥିଲେ । ତାଙ୍କରି ନିକଟରେ ପାଣ୍ଡବ-ଘରଣୀ ଦ୍ରୌପଦୀ ସୈରିନ୍ଧ୍ରୀ ବେଶରେ ଅଜ୍ଞାତବାସ ଅତିବାହିତ କରୁଥିଲେ ।

ଏକଦା ରାଜପୁରର ନାରୀ ଗହଣରେ ଦ୍ରୌପଦୀଙ୍କୁ ଦେଖି କୀଚକ ଅତ୍ୟନ୍ତ କାମାସକ୍ତ ହୋଇ ପଡ଼ିଲା ଏବଂ ତାଙ୍କୁ ଲାଭ କରିବା ପାଇଁ ଦାସୀ ଜରିଆରେ ଉଦ୍ୟମ କଲା । ଦ୍ରୌପଦୀ ଦାସୀର ହୀନ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବାରୁ ସେ ସୁଦେଷ୍ଣାଙ୍କର ସାହାଯ୍ୟରେ ନିଜର ଉଦ୍ଦେଶ୍ୟ ସିଦ୍ଧ କରିବାପାଇଁ କୀଚକର ଦୁର୍ଦ୍ଦଶା ବର୍ଣ୍ଣନା

Digitized by srujanika@gmail.com

କଲା । ଭ୍ରାତୃବତ୍ସଳ ସୁଦେଷ୍ଣା ଭାଇର ଦୁଃରେ ସମଦୁଃଖୀ ହେଲେହେଁ ସେ ଅନ୍ୟାୟକୁ ପ୍ରଶ୍ରୟ ଦେବାପାଇଁ ପ୍ରସ୍ତୁତ ନଥିଲେ । ତେଣୁ ଭାଇକୁ ସନ୍ତୁଷ୍ଟ କରିବାପାଇଁ ସେ ଦ୍ରୌପଦୀଙ୍କୁ ପାନୀୟ ପାତ୍ର ସହିତ କୀଚକ ପୁରକୁ ପଠାଇଲେ ମାତ୍ର ତାଙ୍କ ପ୍ରତି କୌଣସି ଅତ୍ୟାଚାର ନ କରିବାପାଇଁ ଦାସୀକୁ ସତର୍କ କରି ଦେଇଥିଲେ । କାରଣ ସେ ବିଶ୍ୱାସ କରୁଥିଲେ ଯେ—

"ସାମାନ୍ୟ ନୁହେଁ ପତିବ୍ରତା-ମହିମା,
ରକ୍ଷି ନ ପାରେ ତାଙ୍କୁ କାହା ଗରିମା ।

ପୁନଶ୍ଚ ଦାସୀକୁ ସାବଧାନ କରି କହିଛନ୍ତି—

"କପଟ ଥିଲେ ଯାଇ ବୁଝାଇ କହ
ଏ ପାପେ ପରମାୟୁ ହୁଅଇ କ୍ଷୟ ।"

ମାତ୍ର ରାଣୀ ସୁଦେଷ୍ଣା ଥିଲେ ଅତ୍ୟନ୍ତ ସରଳ ବିଶ୍ୱାସିମା । ସେ ନିଜ ଭାଇର କ୍ରୂର ଏବଂ ଅଭିସନ୍ଧି-ମୂଳକ ପ୍ରସ୍ତାବ ବୁଝିପାରି ନଥିଲେ ଏବଂ ଭାଇ ପ୍ରତି ସ୍ନେହ ପରବଶ ହୋଇ ସୈରିନ୍ଧ୍ରୀକୁ ପ୍ରେରଣ କରିଥିଲେ । ମାତ୍ର ପାପର ପରିଣତି ଅତ୍ୟନ୍ତ ଭୟଙ୍କର । ଅନ୍ୟାୟ ଓ ଅବିଚାର କରି କୀଚକ ପରିଶେଷରେ ସବଂଶ ମହାଯାତ୍ରା କରିଥିଲା । ରାଣୀ ନିଜର ଭ୍ରମ ବୁଝିପାରିଥିଲେ ଏବଂ ପତିବ୍ରତା ନାରୀର ଅବମାନନା ହେତୁ କୀଚକର ଐଶ୍ୱର୍ଯ୍ୟ-ପରିପୂର୍ଣ୍ଣ ଜୀବନ ଧୂଳିସାତ୍ ହୋଇଗଲା । ତେଣୁ—

"ଗନ୍ଧର୍ବ କୋପକୁ ଡରି
ସୈରିନ୍ଧ୍ରୀର ମନ ଧରି
ରହିଲେ ସୁଦେଷ୍ଣା ଉଚ୍ଚ ବାଚ ନକରି,
ନରେଶ, ନବର, ନଗରୀ
ସମସ୍ତେ ରହିଲେ ମନେ ସନ୍ତ୍ରାସ ଭରି ।

Digitized by srujanika@gmail.com

# ଦାସୀ 'ଚପଳା'

ବିରାଟରାଜା ଅନ୍ତଃପୁରରେ ସର୍ବଦା ଚତୁର ସେବାକାରିଣୀଗଣ ନିଯୁକ୍ତ ରହି ଥାଆନ୍ତି । 'ଚପଳା' ଏହିଭଳି ଜଣେ ଦାସୀ, ଯେ କି ମହାନ୍ ଶକ୍ତିଶାଳୀ ଦିଗ୍ବିଜୟୀ-ବିରାଟ କୀଚକର ସେବାଦାସୀ ଭାବରେ ଅତ୍ୟନ୍ତ ବିଶ୍ୱାସର ପାତ୍ରୀ ଥିଲା ।

ଏକଦା ବିରାଟରାଣୀ ସୁଦେଷ୍ଣା ଦାସଦାସୀ ପରିବେଷ୍ଟିତା ହୋଇ ଦେବୀପୂଜା କରିବାପାଇଁ ନଗର ବାହାରକୁ ବହିର୍ଗତ ହୋଇଥିଲେ । ରାଣୀଙ୍କ ସେବାକାରିଣୀମାନଙ୍କ ମେଳରେ ଦ୍ରୌପଦୀଙ୍କୁ ଦର୍ଶନ କରି କୀଚକ କାମାନଳରେ ଦଗ୍ଧ ହେଲା । ଏଭଳି ଅତୁଳନୀୟା ସୁନ୍ଦରୀକୁ ଭୋଗ ନ କଲେ ତାର ଜୀବନ ବ୍ୟର୍ଥ ହୋଇଯିବ ବୋଲି ସେ ମନେ କଲା । ତେଣୁ ଦ୍ରୌପଦୀଙ୍କ ଅନୁଚିନ୍ତାରେ ସେ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଲା । ଏହି ମାନସିକ ବିପର୍ଯ୍ୟୟରୁ ପରିତ୍ରାଣ ପାଇବାପାଇଁ କୀଚକ ଚତୁର ସେବାକାରିଣୀ ଚପଳାର ଆଶ୍ରୟ ଗ୍ରହଣ କଲା । ଚପଳା ନିଜ ପ୍ରଭୁର ଆନନ୍ଦ ବର୍ଦ୍ଧନ ପାଇଁ ନରକକୁ ମଧ୍ୟ ଓହ୍ଲାଇ ଯିବାକୁ ପ୍ରସ୍ତୁତ । ଚପଳା ଧନ ଲୋଭୀ ନଥିଲା । ପ୍ରଭୁର ସୁଖକୁ ସେ ଆପଣାର ସୁଖ ବୋଲି ମଣୁଥିଲା । ତେଣୁ ସେ କୀଚକର ଅଳଙ୍କାର ଇତ୍ୟାଦିର ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କରି ପ୍ରଭୁର ଆଦେଶ ପାଳନକୁ ସେ ନିଜର ସୌଭାଗ୍ୟ ବୋଲି ମନେ କରୁଥିଲା । ସେ କୀଚକ ସମ୍ମୁଖରେ ପଣ କରିଥିଲା—

"ଯାଚନ୍ତି ରସିକ, ସୁନ୍ଦରୀମଣିକ
ଛଳେ ବଳେ କଉଶଳେ,

ବାନ୍ଧି ରଖିଦେବ ପ୍ରଣୟ-ଫାଶରେ
ତୁମ୍ଭଙ୍କ ଚରଣ ତଳେ ।

× × × ×

ଅଳଙ୍କାର କିଛି ନ ନେବ ତୁମ୍ଭରୁ
ନ ପିନ୍ଧିବ ପାଠଶାଢ଼ୀ
ସାଆନ୍ତାଣୀ ପଣ୍ଡେ ସେ ବେଶ ଦେଖିବେ
ମୋ ମୁଣ୍ଡେ ପଡ଼ିବ ବାଡ଼ି ।"

ଅତ୍ୟନ୍ତ ସାବଧାନତାର ସହିତ ନିଜର କାର୍ଯ୍ୟରେ ଚପଳା ଅଗ୍ରସର ହେଲା । ଦ୍ରୌପଦୀଙ୍କ ନିକଟରେ ତାଙ୍କର ଅଯଥା ପ୍ରଶଂସା କରିବାରୁ ସେ ଚପଳାକୁ ସନ୍ଦେହ କରିଥିଲେ ଏବଂ ତାକୁ ତର୍ଜିରୁ ବିରତ ହେବାପାଇଁ କହିଥିଲେ—

"ସୈରିନ୍ଧ୍ରୀ ବୋଇଲେ, କେବେ ତୋ ମୁଖରୁ
ନ ଶୁଣେ ଏପରି କଥା
କି ହେଲା ତୋତେ, ଆରମ୍ଭି ବସିଲୁ
ବୃଥା ପ୍ରଶଂସା ଅଯଥା ।
ପ୍ରଶଂସ୍ୟ ଜନର ପରଶଂସା ଛାଡ଼
ମୋ ପ୍ରଶଂସାରେ କି ଫଳ
କି ଲଭ ଉଦ୍ୟାନ ବୃକ୍ଷଟିକୁ ଛାଡ଼ି
ବନ୍ୟ ବୃକ୍ଷେ ଦେଲେ ଜଳ ।"

ଏଭଳି ବାକ୍ୟରେ ଚତୁରୀ ଚପଳା ଦବିଯିବାର ପାତ୍ରୀ ନଥିଲା । ସେ ବରଂ ଦ୍ୱିଗୁଣ ଉତ୍ସାହରେ ଦ୍ରୌପଦୀଙ୍କୁ କୀଚକ-ଗତପ୍ରାଣା କରିବା ଉଦ୍ଦେଶ୍ୟରେ ନାନା ଛଳୋକ୍ତି ପ୍ରୟୋଗ କଲା । ତାଙ୍କର ଶୁଭକାଙ୍କ୍ଷୀ ବୋଲି ଅଭିନୟ କରି ତାଙ୍କର

Digitized by srujanika@gmail.com

ସୁଖଶ୍ରୀ ସେ କାମନା କରୁଛୁ ବୋଲି ଘୋଷଣା କରିଥିବ । ତାଙ୍କ ଭାଷାରେ—

ଚପଳା ବୋଇଲା, "ମୋ ମତେ ସୁନ୍ଦରୀ
ଦେଖାଇ ଏପରି ଛଳ,
ନିଜ ସୁଖ ଶିରୀ ଅବଜ୍ଞା କରିବା
ତୁମ୍ଭ ପକ୍ଷେ ନୁହେ ଭଲ ।
ଯଦି ଇଚ୍ଛା କରୁ ଗୁଣାଭିମାନିନି,
ନାୟକ ତୋ ଅନୁରୂପ,
ସୁଦେଷ୍ଣା-ସୋଦର କୀଚକ'ଅଛନ୍ତି
ଦିଗିଷୁ ବିରାଟ ଭୂପ ।
ବଳିଷ୍ଠ କୀଚକ ସମ୍ପଦ-ଗର୍ବୀର
ଶୃଙ୍ଗ ଦେଇଛନ୍ତି ଧରି
ବିରାଟ ନରେଶ ଆନନ୍ଦରେ ଛନ୍ତି
ସୁଖେ ମୀର ପାନ କରି ।"

ବୁଦ୍ଧିମତୀ ଚପଳା ଦ୍ରୌପଦୀଙ୍କୁ ଜଣେ ସାଧାରଣ ନାରୀ ବୋଲି କଳ୍ପନା କରିଥିଲା । ନାରୀ ଚିରକାଳ ଧନରଙ୍କୁଣୀ । କୀଚକ ପରି ବୀରପୁରୁଷର ପ୍ରେମ ଏବଂ ଐଶ୍ବର୍ଯ୍ୟ ଲାଭ କରିବାପାଇଁ କେଉଁ ନାରୀ ଅବା ଆଗ୍ରହୀ ନହେବ ? ପୁନଶ୍ଚ ରାଜ ଅନ୍ତଃପୁରରେ ଦାସୀ ଭାବରେ ଜୀବନ ଅତିବାହିତ କରିବା ଅପେକ୍ଷା କୀଚକର ପ୍ରେମ ଲାଭ କରି ସୁଖ ସୌଭାଗ୍ୟର ଅଧିକାରିଣୀ ହେବାପାଇଁ କିଏ ଅବା କୁଣ୍ଠିତ ହେବ ? ସେହି ଭରସାରେ ଚପଳା ଅତ୍ୟନ୍ତ ଯୁକ୍ତିଯୁକ୍ତ ଭାବରେ ପ୍ରକାଶ କରିଥିଲା—

Digitized by srujanika@gmail.com

"ଧନ ଦେଖି ଜନ ମନ ଭୁଲିଯାଏ
ଜଗତେ ଅଛି ଏ ଖ୍ୟାତି
ଧନ ପାଇଁ ଲୋକେ ଜୀବନ ଦଅନ୍ତି
ଘୋର ଆହବରେ ମାତି ।
ଧନ କରେ ଦାନୀ ଧନ କରେ ମାନୀ
ଜ୍ଞାନୀ କରିପାରେ ଧନ,
ଧନେ ବଢ଼େ ଠାଣି ଧନେ ବଢ଼େ ଆଣି
ଧନର ସେବକ ଜନ ।
ଧନ ସଙ୍ଗେ ପ୍ରଭୁ-ପଣ ରହିଥାଏ
ଧନୀ ହୀନ ସିନା ଦାସ,
ଧନ ଥିଲେ କର୍ମା ହୁଅନ୍ତା ଭ୍ରମର
ପର ଭବନରେ ବାସ ।"

ଚପଳା ଦ୍ରୌପଦୀଙ୍କ ନିକଟରେ ପୁନର୍ବାର ଯୁକ୍ତି କରିଛି ଯେ ନାରୀମାନେ ସାଧାରଣତଃ ପରାକ୍ରମଶାଳୀ ବୀରପୁରୁଷ କାମନା କରନ୍ତି । କୀଚକ ଏହିଭଳି ଜଣେ ଶକ୍ତିମାନ୍ ପୁରୁଷ, ଯାହାଙ୍କର ବାହୁବଳ ଉପରେ ନିଜେ ବିରାଟ ନରପତି ମଧ୍ୟ ନିର୍ଭର କରିଥାନ୍ତି । ତେଣୁ— "ଭାଗ୍ୟକଥା ସିନା ହେବାର ଏଭଳି
ଲୋକ କୋଳ ପ୍ରଣୟିନୀ ।"

ସାମ, ଦାନ, ଭେଦ ନୀତି ପ୍ରୟୋଗ କରି ସାରିଲାପରେ ଚତୁରୀ ଚପଳା ଦଣ୍ଡନୀତିର ମଧ୍ୟ ଆଶ୍ରୟ ଗ୍ରହଣ କରିଛି । ସେ ଦ୍ରୌପଦୀଙ୍କୁ ଭୟ ଦେଖାଇ କରଗତ କରିବାପାଇଁ ମଧ୍ୟ ପଶ୍ଚାତ୍‌ପଦ ହୋଇନାହିଁ । କାରଣ କୀଚକର ଇଚ୍ଛା ବିରୁଦ୍ଧରେ ଦଣ୍ଡାୟମାନ ହେବାପାଇଁ ବିରାଟ ରାଜ୍ୟରେ କେହି ନାହିଁ । ତେଣୁ—

Digitized by srujanika@gmail.com

ଚପଳା ବୋଇଲା, "ମୋ କଥା ନ ଘେନି
କଲେ ବୃଥା ଅଭିମାନ,
ସୁଖେ ଦେବା କଥା ଦୁଃଖେ ଦେବ, ତହିଁ
ଲଭ ଦେବ ଅପମାନ ।

× × × ×

ଏ ରାଜ୍ୟେ ରହିଲାବନୁ ଶିଖୁଥାଇ
ପତିବ୍ରତା ଅଭିମାନ,
ହୋଇ ସାରିଛି ତୋ କୀଚକ-ମାନସ-
ତରଙ୍ଗରେ ଭାସମାନ ।"

କେବଳ ସେତିକ ନୁହେ, 'ଚପଳା'ର ପ୍ରସ୍ତାବ ଥିଲା ଅତ୍ୟନ୍ତ ପାପପୂର୍ଣ୍ଣ ଏବଂ ଘୃଣ୍ୟ । ନିଜର ସ୍ୱାମୀମାନଙ୍କ ଅଜାଣତରେ ପାପପ୍ରଣୟ କରି ସୁଖଭୋଗ କରିବାପାଇଁ ମଧ୍ୟ ଚପଳା ପ୍ରସ୍ତାବ କରିଥିଲା । ଏହିପରି ଦୁଃଶ୍ଚରିତ୍ରା, ହୀନମନା, କପଟୀ ଦାସୀଠାରୁ କୌଣସି କଥା ଶୁଣିବାପାଇଁ ଦ୍ରୌପଦୀ ପ୍ରସ୍ତୁତ ନଥିଲେ । ତେଣୁ ସେ ତୁରନ୍ତ ତାହାକୁ ବହିଷ୍କାର କରି ଦେଇଥିଲେ—

"ସୈରିନ୍ଧ୍ରୀ ବୋଇଲେ, 'ଜାଣି ପାରିଲି ମୁଁ
ତୋ ମତ ନୁହଇ ଭଲ,
ଆଜ ମୋ ପାଶକୁ ନ ଆସିବୁ କେବେ
ଆଜ୍ଞା ଏବେ ଶୀଘ୍ର ଚଳ ।"

# ସୈରନ୍ଧ୍ରୀ

କୀଚକ ବଧ କାବ୍ୟର ନାୟିକା ହେଉଛନ୍ତି ପାଣ୍ଡବ ଘରଣୀ ଦ୍ରୌପଦୀ । କୁରୁ ଏବଂ ପାଣ୍ଡବମାନଙ୍କ ମଧ୍ୟରେ ଦ୍ୟୂତ କ୍ରୀଡ଼ାର ପରିଣାମରେ ପରାଭବ ସ୍ୱୀକାର କରି ପାଣ୍ଡବମାନେ ଦ୍ୱାଦଶ ବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତ ବାସ କରିଥିଲେ । ଦ୍ୱାଦଶ ବର୍ଷ ବନବାସ କାଳରେ ରାଜରାଣୀ ଦ୍ରୌପଦୀ ଏବଂ ରାଜକୁମାର ପାଣ୍ଡବ ପାଞ୍ଚଭାଇ ଅସୀମ ଧୈର୍ଯ୍ୟ, ସାହସିକତା, ସହ୍ୟନିଷ୍ଠା ଏବଂ ନିରହଂକାରର ପରିଚୟ ପ୍ରଦାନ କରିଥିଲେ । ପରେ ପରେ ଏକ ବର୍ଷ ଅଜ୍ଞାତବାସ କରିବା ପାଇଁ ସେମାନଙ୍କୁ କଠୋର ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କାରଣ ଚତୁର୍ଦ୍ଦିଗରେ କୌରବ-ମାନଙ୍କର ଗୁପ୍ତଚରଗଣ ଖୋଜି ବୁଲୁଥିଲେ । ସେମାନଙ୍କର ଦୃଷ୍ଟିର ଅନ୍ତରାଳରେ ଏକବର୍ଷ ଅଜ୍ଞାତବାସରେ ଦିନ-ଯାପନ କରିବା କିଛି ସହଜ କଥା ନ ଥିଲା । ତେଣୁ କୀଚକ ବଧର କଥାବସ୍ତୁ ଏହି ଅଜ୍ଞାତବାସ-କାଳର ଏକ ସ୍ମରଣୀୟ ଘଟଣା ।

ପାଣ୍ଡବ ଘରଣୀ ଭାରତର ରାଜରାଣୀ ହେଲେହେଁ କର୍ତ୍ତବ୍ୟର ତାଡ଼ନାରେ ସେ ବିରାଟ ରାଜାଙ୍କର ଅନ୍ତଃପୁରରେ ସୈରିନ୍ଧ୍ରୀ ନାମଧରି ଛଦ୍ମବେଶରେ ଅବସ୍ଥାନ କରିଥିଲେ । ପାଞ୍ଚଭାଇ ପଣ୍ଡୁ-ପୁତ୍ରଗଣ ମଧ୍ୟ ନିଜ ନିଜ ଅନୁସାରେ ସେହି ବିରାଟ ନଗରୀରେ ଆସ୍ଥାନ ବାଛି ନେଇଥିଲେ ।

ଏକଦା ରାଣୀ ସୁଦେଷ୍ଣା ଦାସୀ ପରିବୃତ ହୋଇ ଦେବୀ ମନ୍ଦିରକୁ ଯାତ୍ରା କରୁଥିଲେ । ରାଣୀଙ୍କ ଗହଣରେ ଦ୍ରୌପଦୀ ସବଦା ବାରି ହୋଇ ପଡ଼ୁଥିଲେ । ତାଙ୍କର ଅପରୂପ ସୌନ୍ଦର୍ଯ୍ୟ ସେ

Digitized by srujanika@gmail.com

କୌଣସି ଦର୍ଶକର ଦୃଷ୍ଟି ଆକର୍ଷଣ କରି ପାରୁଥିଲା । କବି କଳ୍ପନାରେ ସୁନ୍ଦରୀ ଶିରୋମଣି ସୈରନ୍ଧ୍ରୀ ଥିଲେ—

'ଜମ୍ବୁନଦ ହାର ମଧ୍ୟରେ ହୀର ପଦକ ପରି,
ଦିଶୁଥିଲେ ନାରୀ ଗହଣେ ସଇରନ୍ଧ୍ରୀ ସୁନ୍ଦରୀ ।'

ଏହି ରମଣୀମାନଙ୍କ ମଧ୍ୟରେ ସୈରନ୍ଧ୍ରୀ ନିଜ ଶୋଭା ରାଶିରେ ସ୍ୱର୍ଣ୍ଣହାର ମଧ୍ୟସ୍ଥିତ ହୀରକର ପଦକ ପରି ବିରାଜୁଥିଲେ ।

ସେହି କାଳରେ ବିରାଟ ରାଜାଙ୍କ ଦକ୍ଷିଣ ହସ୍ତ ସ୍ୱରୂପ ରାଣୀ ସୁଦେଷ୍ଣାଙ୍କ ସୋଦର ବୀରଶ୍ରେଷ୍ଠ କୀଚକ ଦ୍ୱିତଳପ୍ରାସାଦର ତୋରଣ ଉପରେ ବସି ଏହି ରମଣୀମାନଙ୍କର ସୌନ୍ଦର୍ଯ୍ୟ କଳନା କରୁଥିଲା । ହଠାତ୍ ସେ ସେହି ସୁନ୍ଦରୀଗଣଙ୍କ ମଧ୍ୟରେ ଦ୍ରୌପଦୀଙ୍କୁ ଦେଖି ଚମକି ପଡ଼ିଲା । ସେ ମନେକଲା, ଏପରି ସୁନ୍ଦରୀ ସେ କେଉଁଠାରେ ଦେଖିଛି କି ନାହିଁ ସନ୍ଦେହ । ଦ୍ରୌପଦୀଙ୍କୁ କୀଚକ "ମଧୁବା ଶିରଭ୍ରଷ୍ଟ ପ୍ରସୂନ" ଅଥବା "ଏ ମଦନ-କଳ୍ପପାଦପ-ପୁଷ୍ପ ଇଷ୍ଟ-ବରଦା" ସଙ୍ଗେ ତୁଳନା କରିଅଛି । ପୁନଶ୍ଚ ସେ ବିଚାର କରିଛି—

"କାନ୍ତ ଗୃହିଁ ପୁଣି କରଇ ମନେ ଏ ଆଲୋଚନା
ରବି ରଶ୍ମି ଉପାଦାନେ କି ଗଢ଼ା ବାମଲୋଚନା ।

କୀଚକର ଦୃଷ୍ଟି ପଥରୁ ସୁନ୍ଦରୀ ଦ୍ରୌପଦୀ ଅପସରି ଯିବାରୁ ତାହାର ଭାବନାର ସୀମା ରହିଲା ନାହିଁ । ଯେ ଏହି ରମଣୀ-ରତ୍ନକୁ ଲାଭ କରିବାପାଇଁ ଯେ କୌଣସି ଉପାୟ ଅବଲମ୍ବନ କରିବାକୁ ବଦ୍ଧପରିକର ହେଲା । ଦାସୀକୁ ପଚାରି କୀଚକ ଜାଣିପାରିଥିଲା ଯେ ନିଜ ଅନ୍ତଃପୁରରେ ସେହି ରମଣୀ ସୈରନ୍ଧ୍ରୀ

Digitized by srujanika@gmail.com

ନାମ ଧାରଣ କରି ଅବସ୍ଥାନ କରୁଅଛି । ତାହାର ନିକଟରେ ନିଜର ପ୍ରେମ ନିବେଦନ ଜଣା କରିବାପାଇଁ ପ୍ରିୟ ଏବଂ ବିଶ୍ୱାସୀ ଦାସୀ ଚପଳାକୁ ସେ ଅନୁରୋଧ କଲା । ପ୍ରଭୁଭକ୍ତ ଚପଳାର ବିଶ୍ୱାସ ଥିଲା, ଐଶ୍ୱର୍ଯ୍ୟ ଏବଂ ଶକ୍ତି ପ୍ରତି ନାରୀ ଚିରକାଳ ଆକୃଷ୍ଟ ହୋଇ ଆସିଛି । ତେଣୁ ଅନ୍ତଃପୁରନିବାସିନୀ ସୈରନ୍ଧ୍ରୀକୁ ସେ ଅକ୍ଲେଶରେ ଆୟତ୍ତ କରିପାରିବ । ପୁଣି ଶକ୍ତିମାନ୍ କୀଚକର ଅବମାନନା କରିବାପାଇଁ ବିରାଟ ରାଜ୍ୟରେ କାହାର ଅବା ସାହସ ହେବ ? ତେଣୁ ଦ୍ରୌପଦୀଙ୍କୁ ରାଜସୁଖ, ଧନ ସମ୍ପଦର ଲୋଭ ପ୍ରଦର୍ଶନ କରାଇ କୀଚକର ପାପ-ପ୍ରସ୍ତାବ ନିବେଦନ କଲା । ମାତ୍ର ଦ୍ରୌପଦୀ ତାହାକୁ ଏପରି ପାପପ୍ରସ୍ତାବ କରିବାପାଇଁ ବାରଣ କଲେ । ସେ ଜଗତର କୌଣସି ଐଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ ନୁହନ୍ତି । ସେ ସବୁ ସମ୍ପଦର କୌଣସି ମୂଲ୍ୟବୋଧ ତାଙ୍କ ନିକଟରେ ନାହିଁ ।

ସୈରନ୍ଧ୍ରୀ ବୋଇଲେ, "ନୁହେ କମଳିନୀ
ତରୁବରକୁ ଲୋଡ଼ା ନାହିଁ
ବନ କୁସୁମ ମୁଁ ପଡ଼ିଅଛି ବନ—
ଦେବୀଙ୍କ ପୀରିତି ପାଇଁ ।"

ସାମାନ୍ୟ ଦାସୀ ମନେ କରି ଚପଳା ଦ୍ରୌପଦୀଙ୍କୁ କୀଚକର ଆସୁରୀ ପରାକ୍ରମର ଧମକ ଦେଲା । ସେ କହିଥିଲା--

ଚପଳା ବୋଇଲା, "ମୋ କଥା ନ ଘେନି
କଲେ ବୃଥା ଅଭିମାନ
ସୁଖେ ହେବା କଥା ଦୁଃଖେ ହେବ, ତହିଁ
ଲାଭ ହେବ ଅପମାନ ।"

Digitized by srujanika@gmail.com

କେବଳ ସେଡିକି ନୁହେ—

"ଏ ରାଜ୍ୟ ରହିଲା ବନ୍ଧୁ ଶିଖିବାକି
ପତିବ୍ରତା ଅଭିମାନ
ହୋଇ ସାରିଛି ତୋ କୀଚକ-ମାନସ-
ତରଙ୍ଗରେ ଭାସମାନ ।"

କିନ୍ତୁ ମହାସତୀ ଦ୍ରୌପଦୀ ଏହି ସାମାନ୍ୟ କଥାରେ ବିଚଳିତ ନ ଥିଲେ । ସେ ଚମ୍ପଳାକୁ ଜଣାଇ ଦେଲେ ଯେ ଯଦି ତାଙ୍କ ପ୍ରତି କାହାର ଅତ୍ୟାଚାର ହୁଏ, ତେବେ ତାଙ୍କର ସ୍ୱାମୀମାନେ ତାହାକୁ ଯମପୁରକୁ ପ୍ରେରଣ କରିଦେବେ । ସତୀର ଅବମାନନାକାରୀ ବ୍ୟକ୍ତିଙ୍କୁ ଏ ସଂସାରରେ ଭଗବାନ କ୍ଷମା ଦିଅନ୍ତି ନାହିଁ ।

ଚପଳା ପ୍ରଥମ ଚେଷ୍ଟାରେ ବିଫଳ ହେଲେ ମଧ୍ୟ ଯେ କୌଣସି ଉପାୟରେ ଦ୍ରୌପଦୀଙ୍କୁ କୀଚକର ସମ୍ମୁଖକୁ ଆଣିପାରିଲେ ସେ ଆପେ ଆପେ ଆକୃଷ୍ଟ ହୋଇ ପଡ଼ିବେ ବୋଲି ତାର ପୂର୍ଣ୍ଣ ବିଶ୍ୱାସ ରହିଥିଲା । ତେଣୁ ରାଣୀ ସୁଦେଷ୍ଣାଙ୍କ ଆଗରେ ପ୍ରିୟ ଭାଇ କୀଚକର ମାନସିକ ଗ୍ଲାନି ପ୍ରକାଶ କରି ଦ୍ରୌପଦୀଙ୍କୁ ସାକ୍ଷାତ କରିବାର ବ୍ୟବସ୍ଥା କରିବାକୁ ଅନୁରୋଧ କଲା । ଏକପକ୍ଷରେ ସୋଦର ପ୍ରତି ମମତା ଏବଂ ଅନ୍ୟ ପକ୍ଷରେ ସତୀର ଅବମାନନା, ଏହି ଦ୍ୱନ୍ଦ୍ୱରେ ପଡ଼ି ସୁଦେଷ୍ଣା ଏକ ଉପାୟ ଚିନ୍ତା କଲେ । କେବଳ ପାନପାତ୍ର ଗ୍ରହଣକରି ଦ୍ରୌପଦୀ କୀଚକକୁ ପ୍ରଦାନ କରିଆସିବେ ଏବଂ ତାହାଦ୍ୱାରା କୀଚକର ସୈରନ୍ଧ୍ରୀ-ଦର୍ଶନତୃଷ୍ଣା ମେଣ୍ଟିଯିବ ବୋଲି ତାଙ୍କର ଧାରଣା ହେଲା । ଦ୍ରୌପଦୀ ରାଣୀଙ୍କ ଆଦେଶ ପାଳନ କରି କୀଚକ ସଦନକୁ ଗମନ କଲାବେଳେ ତାଙ୍କର ଏକମାତ୍ର ସହାୟ ଥିଲେ ସତ୍ୟ ଏବଂ ଭଗବାନ ।

Digitized by srujanika@gmail.com

"ହରି ସୁମରି କଲେ ପଦସ୍ମରଣ
ଯେ ଗତି କରେ ଯତି ମତି ହରଣ ।"

ଅନ୍ଧାରରେ ପାଇ କୀଚକ ଦ୍ରୌପଦୀଙ୍କ ପ୍ରତି ବଳ ପ୍ରୟୋଗ କରିବାକୁ ଅଗ୍ରସର ହେଲା । ମାତ୍ର ଛଳେବଳେ କୌଶଳେ କୀଚକକୁ ପରାଭବ ଦେଇ ଦ୍ରୌପଦୀ ସେଠାରୁ ମୁକ୍ତ ହୋଇ ଆସିଲେ । ଏହି ବିପଦରୁ ଉଦ୍ଧାର ଲାଭ କରିବାପାଇଁ ସେ ରାଜସଭାରେ ଉପଗତ ହେଲେ ଏବଂ ରାଜାଙ୍କୁ ପ୍ରାର୍ଥନା କଲେ । ସେ ଜାଣିଥିଲେ ଯେ କୀଚକକୁ ଶାସ୍ତି ଦେବାର ଶକ୍ତି ଓ ସାହସ ବିରାଟ ରାଜା ହରାଇ ବସିଛନ୍ତି । ମାତ୍ର ସେଠାରେ ଉପସ୍ଥିତ ପାଣ୍ଡବଶ୍ରେଷ୍ଠ ଯୁଧିଷ୍ଠିର ତାଙ୍କୁ ଇଙ୍ଗିତ ଦ୍ୱାରା ଜଣାଇଲେ ଯେ କେବଳ ଦ୍ୱିତୀୟ ପାଣ୍ଡବ ଭୀମସେନ ତାଙ୍କୁ ଏ ବିପଦରୁ ଉଦ୍ଧାର କରିପାରିବେ ।

"ଏ ରାଜ୍ୟରେ ନାହିଁ ତୋର ଅନ୍ୟ ପ୍ରତିକାର,
'ଦ୍ୱିତୀୟ ସ୍ୱାମୀକ ଭଜ' ଏ ଆମ୍ଭ ବିଚାର ।"

ଯୁଧିଷ୍ଠିରଙ୍କ ଏହି ବାଣୀ ଅତ୍ୟନ୍ତ ସୂଚନାଧର୍ମୀ ହୋଇଅଛି । ଦ୍ରୌପଦୀଙ୍କ ପ୍ରତି ଅବମାନନାର ପ୍ରତିଶୋଧ ନେବା ପାଇଁ ବିରାଟ ରାଜ୍ୟରେ ଅଜ୍ଞାତବାସ କରୁଥିବା ଭୀମସେନ ବଦ୍ଧପରିକର ହେଲେ ଏବଂ ରାତିର ନିଭୃତ ପ୍ରହରରେ ଶକ୍ତିଶାଳୀ କୀଚକ ଏବଂ ତାହାର ଅନେକଶତ ଭ୍ରାତାଙ୍କୁ ଯମପୁରକୁ ପ୍ରେରଣ କଲେ । ସେହିଦିନୁ ସଖୀ ସୈରିନ୍ଧ୍ରୀଙ୍କୁ ବିରାଟ ରାଜ ଅନ୍ତଃପୁରରେ ସମସ୍ତେ ଭୟ କରିବାକୁ ଲାଗିଲେ ।

Digitized by srujanika@gmail.com

"ସୈରନ୍ଧ୍ରୀର ମନ ଧର
ରହିଲେ ସୁଦେଷ୍ଣା ଉଚ୍ଚ ବାଚ ନକର,
ନରେଶ, ନବର, ନଗରୀ,
ସମସ୍ତେ ରହିଲେ ମନେ ସନ୍ତ୍ରାସ ଭରି ।"

—*†*—

# କୀଚକ ବଧ କାବ୍ୟର ରଚନା ଶୈଳୀ

ସାହିତ୍ୟର ଉଦ୍ଦେଶ୍ୟ ହେଉଛି ଆନନ୍ଦ ଦାନ କରିବା । ଯେଉଁ ସାହିତ୍ୟ ପାଠ କଲେ ମନରେ ଆନନ୍ଦ ଜାତ ହେବା ସଙ୍ଗେ ସଙ୍ଗେ ଉଜ୍ଜ୍ୱଳ ଅନୁଭୂତିରେ ହୃଦୟ ଅରୂପ ରାଜ୍ୟରେ ବିଚରଣ କରେ, ତାହା ଉନ୍ନତ ସାହିତ୍ୟ । ଉଚ୍ଚାଙ୍ଗ ସାହିତ୍ୟ ସତ୍ୟର ପ୍ରତିଷ୍ଠା କରି ଶାନ୍ତିର ବାଣୀ ପ୍ରଚାର କରିଥାଏ । ଏହି ଆନନ୍ଦ ସଞ୍ଚାର ଉଦ୍ଦେଶ୍ୟରେ କବିମାନେ କାବ୍ୟ ମଧ୍ୟରେ ନାନା ରସର ଅବତାରଣା କରିଥାଆନ୍ତି । ବିଭିନ୍ନ ଅଳଙ୍କାରର ଅବତାରଣା ସଙ୍ଗେ ସଙ୍ଗେ ଚମତ୍କାର ଭାଷା ଜରିଆରେ ପାଠକର ମନୋରଞ୍ଜନ ପାଇଁ କବି ଯଥେଷ୍ଟ ଉପାଦାନ ଯୋଗାଇ ଦେଇଥାନ୍ତି ।

କବି ଗଙ୍ଗାଧର ଆଧୁନିକ ଯୁଗର କବି । ପ୍ରାଚୀନ କବିମାନଙ୍କ ପରି ସେ ପୁରାଣ ଓ ଇତିହାସରୁ କଥାବସ୍ତୁ ଗ୍ରହଣ କରିଥିଲେହେଁ ସେଗୁଡ଼ିକର ପରିବେଷଣ ପାଇଁ ସେ ଆଧୁନିକ ଯୁଗର ଉପାୟ ଅବଲମ୍ବନ କରିଛନ୍ତି । ତାଙ୍କର ଭାଷା ଅତ୍ୟନ୍ତ ସରଳ ଏବଂ ଭାବ ଅତ୍ୟନ୍ତ ମନୋଜ୍ଞ ଓ ହୃଦୟଗ୍ରାହୀ ହୋଇଅଛି । ଗଙ୍ଗାଧର ବାସ୍ତବିକ ଜଣେ ସାର୍ଥକ କବି । ବର୍ଣ୍ଣନାର ଛନ୍ଦେ ଛନ୍ଦେ ଅପୂର୍ବ

Digitized by srujanika@gmail.com

ସୌନ୍ଦର୍ଯ୍ୟ ବିଳାସ ଦେଖିବାକୁ ମିଳେ । ତାଙ୍କର କୀଚକବଧ କାବ୍ୟରେ ପ୍ରକୃତି ଚିତ୍ରଣ, ବିଷୟ ପରିବେଷଣ ଓ କାବ୍ୟର ରଚନାର ଉଦ୍ଦେଶ୍ୟ ପ୍ରଭୃତି ଆଲୋଚନା କଲେ ଏହା ପ୍ରମାଣିତ ହୋଇପାରିବ । ଏହି କାବ୍ୟରେ ଆଦର୍ଶ ରମଣୀ ପାଣ୍ଡବ ଘରଣୀ ଦ୍ରୌପଦୀଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ପ୍ରକାଶ କରାଯାଇଅଛି । ପାପାଗ୍ରସ୍ତ, କୁମତି କୀଚକର ପ୍ରବଳ ଆସୁରି ମନୋଭାବ କଳୁଷକାଳ ପାଇଁ କାବ୍ୟ ସୁନ୍ଦରୀଙ୍କୁ ବିଚଳିତ କରିଥିଲେହେଁ ପରିଶେଷରେ ସତ୍ୟର ଜୟଜୟକାର ଘୋଷଣା କରାଯାଇଛି । କାବ୍ୟର ପ୍ରକୃତ ଲକ୍ଷ୍ୟ ସାଧିତ ହୋଇଅଛି । ଭାରତୀୟ ସତୀ ନାରୀର ଆଦର୍ଶ ପ୍ରମାଣିତକରି ସମାଜକୁ ଉଦ୍‌ବୁଦ୍ଧ କରିବା କବିଙ୍କର ଉଦ୍ଦେଶ୍ୟ ।

କଳ୍ପନାର ବୈଚିତ୍ର୍ୟ ସମ୍ପାଦନ କୀଚକବଧ କାବ୍ୟଟିକୁ ଅଧିକ ରସାଳ ଓ ପୁଷ୍କଳ କରିଅଛି ।

କୀଚକବଧ ଏକ ଗୀତିମୟ କାବ୍ୟ । ଉପଧା ମିଳନରେ କବିଙ୍କର ସଫଳତା ଲକ୍ଷ୍ୟକରିବାର କଥା । ସେହି କାରଣରୁ ଏହି କାବ୍ୟଟି ଅଧିକ ସୁଖପାଠ୍ୟ ହୋଇ ପାରିଅଛି । ସପ୍ତମ ସର୍ଗରେ ହୁକ୍କୃତର ବର୍ଣ୍ଣନା ପ୍ରସଙ୍ଗରେ ଗଙ୍ଗାଧର ଲେଖିଛନ୍ତି—

ଅଇଲା ଉଷା-ପୋଷିତ କୁସୁମେ ହୋଇ ଭୂଷିତ
ଭ୍ରମର-ଅଞ୍ଜନାଞ୍ଚିତ ପଦ୍ମନୟନା,
ବିହଙ୍ଗ ସ୍ୱନ କଙ୍କିଣି ନାକ୍ୱଣିଲା କଣି କଣି
ଜୀବଚତୁ ନେଲା କଣି କୁନ୍ଦଦଶନା,
ଅରୁଣ ଚରଣ ସୁନ୍ଦର,
ପ୍ରଭାତୀ ତାରକା ମଥାମଣି ଭାସ୍ୱର ।

କବିଙ୍କର ଭାଷା ଅତ୍ୟନ୍ତ ଲାଳିତ୍ୟପୂର୍ଣ୍ଣ । ସହଜ ଓ ସରଳ ଭାଷାର ବ୍ୟବହାର ସହିତ କବିଙ୍କର ବର୍ଣ୍ଣନାମାଧୁରୀ ବହୁ

Digitized by srujanika@gmail.com

ପରିମାଣରେ ଇଙ୍ଗିତଧର୍ମୀ ହୋଇଥିବାରୁ ଅଧିକ ମନୋହାରୀ ହୋଇଅଛି । ବିରାଟ ନଗରୀର ଚତୁର୍ଦ୍ଦିଗରେ ଯେଉଁ ରମ୍ୟ ସହକାରବନ ଅଛି, ତାହାର ସୌନ୍ଦର୍ଯ୍ୟ ଅନୁପମ । ସେହି ଶୋଭାର ବର୍ଣ୍ଣନା ପ୍ରସଙ୍ଗରେ କବିଙ୍କର କଳ୍ପନା ଚାତୁରୀ ଅତୁଳନୀୟ—

ଘନତରୁ ରନ୍ଧ୍ରଭେଦୀ ପ୍ରଭାକର କର,
ବିକୀର୍ଣ୍ଣିତ ହୋଇ ଛାୟା ଭୂମିରେ ସୁନ୍ଦର ।
ଅନନ୍ତ ମସ୍ତକେ ଯେହ୍ନେ ମଣି ସମୁଜ୍ଜ୍ୱଳ,
ଯମୁନା ବକ୍ଷରେ କିବା ଶ୍ୱେତ ଶତଦଳ ।
ରଜନୀ ବିଗ୍ରହେ କିବା ବିକଶିତ ମଲ୍ଲୀ,
କିବା ପାପି-ଜୀବନର ପୂର୍ବ ପୁଣ୍ୟାବଳୀ ।
କିବା ଊର୍ଦ୍ଧ୍ୱବାହୁ ଯୋଗୀ ପାଦପଗଣର,
ଶୁଭ୍ରବିନ୍ଦୁମୟ ମୃଗଚର୍ମ ଆସନର ।

ସେହି ସହକାର ବଣ ମଧ୍ୟରେ ବିରାଟ ନଗରୀର ଶୋଭା କଳନା କରାଯାଇ ପାରିବ ନାହିଁ । ଅତି ଅଳ୍ପ କଥାରେ କବି ବିରାଟ ନଗରୀର ଏକ ସାର୍ଥକ ବର୍ଣ୍ଣନା ଦେବା ପାଇଁ କ୍ଷମ ହୋଇ ପାରିଛନ୍ତି । ସେ ଲେଖିଛନ୍ତି—

"ଶ୍ୟାମ-ଆମ୍ରବନ ମଧ୍ୟେ ଧବଳ ନଗରୀ,
ଲକ୍ଷିଁ ଦୂରୁ ଶତେ ଭାବୁଥାନ୍ତି ବ୍ୟୋମଚାରୀ ।
ଅବନୀ ଖୋଷାରେ କି ସେ ଯୂଈଫୁଲ ଗଭା,
କାଳନ୍ଦୀରେ ପୁଞ୍ଜୀଭୂତ ହଂସଗଣ ଅବା ।"

ଦାସୀ ଚପଳାର ଚାତୁର୍ଯ୍ୟୋକ୍ତି ଏହି କାବ୍ୟରେ ଅତ୍ୟନ୍ତ ଉପଭୋଗ୍ୟ ହୋଇଅଛି । କାମୁକ କୀଚକ ସୈରିନ୍ଧ୍ରୀଙ୍କୁ ପ୍ରେମ ନିବେଦନ କରିବା ପାଇଁ ଦାସୀ ଚପଳାର ଆଶ୍ରୟ ଗ୍ରହଣ

Digitized by srujanika@gmail.com

କରିଅଛି । ଦାସୀ କୀଚକର ମନସ୍କାମନା ଚରିତାର୍ଥ କରିବା ପାଇଁ ଯେଉଁ ପ୍ରତିଶ୍ରୁତି ଦେଇଅଛି ତାହା ଏହିପରି ବର୍ଣ୍ଣିତ ହୋଇଅଛି—

"ଚପଳା ବୋଇଲା, ଜାଣେ ସୈରିନ୍ଧ୍ରୀକି
ବାସ୍ତବ ସୁନ୍ଦରୀ ସାର,
ପୁରୁଷର ମନ ଆକର୍ଷିତ ହେବା
ତହିଁ ନୁହେଁ ଚମତ୍କାର ।
ପତି-ବିରହିଣୀ କପୋଲୀ ପରାୟେ
ହୋଇଅଛି ଏକାକୀ
ସହଜେ ତୁମ୍ଭଙ୍କ ନାମରେ ତାହାର
ମନ ଆଣିଦେବି କିଣି ।
ସୁନାସୀର-ପଦ କରଗତ ହେଲେ
କେ ଠେଲି ଦେଇଛି ପଦେ ?
ଅସମ୍ଭବ ସିନା ବିକଶିତ ପୁଷ୍ପ
ଚଢ଼ି ଦେବା ଷଟପଦେ ।
ଯାଉଛି ରସିକ, ସୁନ୍ଦରୀମଣିକି
ଛଳେ ବଳେ କଉଶଳେ
ବାନ୍ଧି ରଖି ଦେବି ପ୍ରଣୟ-ପାଶରେ
ତୁମ୍ଭଙ୍କ ଚରଣ ତଳେ ।

ରାଣୀ ସୁଦେଷ୍ଣାଙ୍କ ଅନୁରୋଧରେ ସୈରିନ୍ଧ୍ରୀ କୀଚକପୁରରେ ପ୍ରବେଶ କରି ତାହାଙ୍କୁ ମଦ୍ୟ ପାତ୍ର ପ୍ରଦାନ କରି ଆସିଲେ । ମାତ୍ର କାମୁକ କୀଚକ ସେତିକରେ ସନ୍ତୁଷ୍ଟ ନ ଥିଲେ । କବି ସେଠାରେ ବର୍ଣ୍ଣନା ପ୍ରସଙ୍ଗରେ ତାର ବିଭତ୍ସ ମନୋଭାବର ଅତ୍ୟନ୍ତ ଚମତ୍କାର ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ମନେହୁଏ, ସମଗ୍ର

Digitized by srujanika@gmail.com

କାବ୍ୟରେ ଏପରି କବିତ୍ୱ ଏବଂ ସାର୍ଥକ କଳ୍ପନା-ବିଳାସ ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ଦ୍ରୌପଦୀ ପଳାୟନ କରନ୍ତେ ଦୁଷ୍ଟ ପାପବୁଦ୍ଧି କୀଚକ ଅତ୍ୟନ୍ତ ଉଚ୍ଛୃଙ୍ଖଳ ହୋଇ ତାହାଙ୍କୁ ଧରିବାପାଇଁ ଅନୁଧାବନ କରିଅଛି । ଏହି ଅନୁଧାବନର ଚିତ୍ର ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଅଛି । କବି ଗଙ୍ଗାଧର ଲେଖିଅଛନ୍ତି—

ଦ୍ରୌପଦୀ ଦ୍ରୁତପଦେ ଧାଆଁନ୍ତି ଆଗ,
ମୃଗୀ ପଳାଏ ଯେସନେ ଦେଖିଲେ ବାଘ,
ପଛକୁ ଉଡ଼େ ବାମା ଅଞ୍ଚଳ-ଚୀର
ମୁକ୍ତ କୁନ୍ତଳ ପୃଷ୍ଠେ ହୁଅଇ ବିଛୁ ।
ହଲଇ କଟି, ହଲେ ବାହୁ ଯୁଗଳ;
ଶିକର ନାଚେ ଶୋଭି ମୁଖମଣ୍ଡଳ ।
ବଦ୍ଧ ଅଧର ଓଷ୍ଠ ରୁଦ୍ଧ ନିଶ୍ୱାସ,
ଉର ବସନ ନାଚେ, ହୋଇ ଉଶ୍ୱାସ;
ପଛରୁ ଦିଶି ପାଦ ରକତ କାନ୍ତି
ଜନ୍ମାଉଥାଏ ସ୍ଥଳ-କମଳ ଭ୍ରାନ୍ତି ।
ଲଗି ଦଉଡ଼େ କାହିଁ ପାଦପ ତଳେ
ସଳଖେ ଧାଏଁ ପୁଣି ମୁକତ ସ୍ଥଳେ ।
ପାର୍ଶ୍ୱ ପାଦପ ନବପଲ୍ଲବଗଣ,
କାହିଁ ବା କରୁଥାନ୍ତି ପଦ ଚୁମ୍ବନ ।
କୀଚକ କୃଷ୍ଣା ପଛେ ଥାଏ ଦଉଡ଼ି
ତା ଗଳେ ଲଗିଥାଏ ମୋହ-ଦଉଡ଼ି ।”

ଆଲୋଚ୍ୟ ବାକ୍ୟରେ କୀଚକ ଶତଭାଇଙ୍କୁ ସହିତ ନିହତ ପ୍ରହରରେ ଭୀମ ଯେପରି ଭାବରେ ହତ୍ୟା କରିଅଛନ୍ତି, ତାହାର

Digitized by srujanika@gmail.com

ବର୍ଣ୍ଣନା ମଧ୍ୟ ଅତ୍ୟନ୍ତ ଭୟଙ୍କର ଏବଂ ଭୀମଙ୍କର ବୀରତ୍ୱର ସାର୍ଥକ ଅଭିବ୍ୟକ୍ତି । ସେ କାଳର ବୃକୋଦରର ରୂପବର୍ଣ୍ଣନାରେ କବିଙ୍କର କଳ୍ପନା ବିଳାସ ଅତୁଳନୀୟ । ବଡ଼ଭାଇ କୀଚକର ମୃତ୍ୟୁ ଘଟଣାରେ ଅନେଶ୍ୱତ ବୀରଭ୍ରାତା ସୈରନ୍ଧ୍ରୀଙ୍କୁ ମୃତ୍ୟୁର କାରଣ ଜାଣି ତାଙ୍କୁ ଲାଞ୍ଛିତ କରିବାପାଇଁ ଦଉଡ଼ି ଆସିଲେ । ମାତ୍ର ଦ୍ରୌପଦୀଙ୍କର ବିକଳ କ୍ରନ୍ଦନ ଭୀମଙ୍କୁ ବିଚଳିତ କଲା । ସେ ଭୟଙ୍କର ରୂପ ଧାରଣ କରି ଧ୍ୱଂସଲୀଳା ସାଧନ ପାଇ ସାର ପ୍ରାଙ୍ଗଣରେ ଉପସ୍ଥିତ ହେଲେ—

"ଏ ସମୟେ ବୃକୋଦର        କ୍ରୋଧେ ହୋଇ ଥର ଥର
ସର୍ବାଙ୍ଗରେ ହାଣ୍ଡି କଲା ବୋଲି ସୁଧନେ,
ଧରି ଭୟଙ୍କର ବେଶ        ସେ ଦଳେ କଲା ପ୍ରବେଶ
ମତ୍ତ ଗଜରାଜ ଯଥା ନଳିନୀ-ବନେ
କାହାକୁ କରି ପଦାଘାତ
କଲା ମୁଷ୍ଟି ପ୍ରହାରେ କା ଶରୀର ପାତ ।
ବୁଲାଇ ଧରି କା ବାଳ        ଫିଙ୍ଗି ପୂରାଇଲା କାଳ
ଜୀବନ ଘେନିଲା ତଣ୍ଟି ଚିପି କାହାର ।
କାହାର ଟେକି ଚରଣ        କରୁଢ଼ି ଦେଲା ମରଣ
କାହା ଶିର ଚୂର୍ଣ୍ଣ କଲା କରି ପ୍ରହାର
କେତେ ଭୟେ ଧରି ଜୀବନ
ପଳାଇଲେ ତେଜି ଯାଜ୍ଞସେନୀ- ଭବନ ।
× × × ×
ବଳେ ଜଣ ଜଣ କରି        କା କେଶ କା କର ଧରି
ନିକ୍ଷେପିଲା ପ୍ରଜ୍ୱଳିତ ଚିତା କବଳେ
ଛଟପଟେ ସଜୀବନେ        ପଡ଼ି ପ୍ରଚଣ୍ଡ ଦହନେ
କୀଚକ ଅନୁଜଗଣ ମଲେ ବିକଳେ,

Digitized by srujanika@gmail.com

କୀଚକ ତନୁର୍ଦ୍ଧ୍ୱେଁ ଚଢ଼ିଲ
ଘୃତର ଆହାରେ ବହ୍ନି ଶିଖା ବଢ଼ିଲ ।
ଚିଇଁ ଚିଇଁ ସିଇଁ ସିଇଁ ଶବଦେ ରୁଧିର ପିଇ
ଲେଲିହ ଶିଖାରେ ଧରି ରୂପ ଭୈରବ,
ଚଟ ଚଟ ଫଟ ଫଟ ଶବଦ କରି ପ୍ରକଟ
ଗ୍ରେବାଇ ଗ୍ରେବାଇ ବହ୍ନି ଖାଇଲା ଶବ,
ମହୀବ୍ୟାପୀ ମହିମା ଯାର
କ୍ଷଣକ ଭିତରେ ଆହା ହେଲା ସେ ଖାର ।”

ଯେତେବେଳେ ଦ୍ରୌପଦୀ କୀଚକର କବଳରୁ ମୁକ୍ତି ପାଇବାର ଉପାୟ ଜାଣିବା ନିମନ୍ତେ ବିରାଟରାଜସଭାରେ ଅଭିଯୋଗକରି ଅଛନ୍ତି, ସେତେବେଳେ କଙ୍କବେଶୀ ଯୁଧିଷ୍ଠିର ତାଙ୍କୁ କହିଅଛନ୍ତି —ଏ କ୍ଷେତ୍ରରେ ତୁମ୍ଭର ଦ୍ୱିତୀୟ ପତିଙ୍କି ଭଜିବା ଉଚିତ । ବିରାଟ ରାଜ ମନେକଲେ ଯେ କଙ୍କ ଦ୍ରୌପଦୀଙ୍କୁ କହୁଁଛନ୍ତି ଯେ କୀଚକକୁ ଦ୍ୱିତୀୟ ପତିରୂପେ ଗ୍ରହଣ କରୁ । ମାତ୍ର ଦ୍ରୌପଦୀ ଯୁଧିଷ୍ଠିରଙ୍କର ପ୍ରକୃତ ଅଭିପ୍ରାୟ ବୁଝିପାରି ଅନ୍ୟପତିମାନଙ୍କର ସାହାଯ୍ୟ ଭିକ୍ଷା ନକରି ଦ୍ୱିତୀୟପୁତ୍ର ଭୀମଙ୍କର ଆଶ୍ରୟ ନେଲେ ।

ମୋଟ ଉପରେ ମେଘେଶଙ୍କର ଅନୁପମ ଶୈଳୀ, ବିଚିତ୍ର ଶବ୍ଦବିନ୍ୟାସ, ରସସୃଷ୍ଟିରେ ଚମତ୍କାରିତା, ନିସର୍ଗ ପ୍ରକୃତିର ମନୋଜ୍ଞ ଚିତ୍ରଣ, ଏବଂ ସର୍ବୋପରି ଚରିତ୍ର ଚିତ୍ରଣରେ ବଳିଷ୍ଠ ଭାବନାର ଅଭିବ୍ୟକ୍ତି କବିଙ୍କୁ ଅମର କରିଅଛି । ତାଙ୍କର କବି-ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର କୀଚକବଧ କାବ୍ୟରେ ଲିପିବଦ୍ଧ ହୋଇଅଛି କହିଲେ ଅତ୍ୟୁକ୍ତି ହେବନାହିଁ ।

———

Digitized by srujanika@gmail.com